# ସନ୍ଥ ଯୋହନଙ୍କ ଲିଖିତ ସୁସମାଚାର

## ଜୀବନଦାୟକ ବାକ୍ୟ :

୧ ସୃଷ୍ଟିର ପୂର୍ବରୁ ବାକ୍ୟ ଅବସ୍ଥାନ କରୁଥିଲେ ; ସେହି ବାକ୍ୟ ଓ
ଈଶ୍ୱର ଏକତ୍ର ଅବସ୍ଥାନ କରୁଥିଲେ ଏବଂ ସେହି ବାକ୍ୟହିଁ ଈଶ୍ୱର ।
୨,୩ ସୃଷ୍ଟିର ଆରମ୍ଭରୁ ସେହି ବାକ୍ୟ ଈଶ୍ୱରଙ୍କ ସହିତ ଥିଲେ । ପ୍ରତ୍ୟେକ ବସ୍ତୁ
ତାଙ୍କ ଦ୍ୱାରା ସୃଷ୍ଟି ହେଲା ଏବଂ ତାଙ୍କ ବିନା କୌଣସି ବିଷୟ ସୃଷ୍ଟି
୪ ହୋଇ ନାହିଁ । ସେହି ବାକ୍ୟ ମଧ୍ୟରେ ଜୀବନ ଥିଲା, ଏହି ଜୀବନ ମନୁଷ୍ୟ-
୫ ମାନଙ୍କୁ ଜ୍ୟୋତିଃ ପ୍ରଦାନ କଲା । ସେହି ଜ୍ୟୋତିଃ ଅନ୍ଧକାର ମଧ୍ୟରେ
ପ୍ରଜ୍ୱଳିତ ହେଲା, କିନ୍ତୁ ଅନ୍ଧକାର ତାଙ୍କୁ ଜୟ କରି ପାରିଲା ନାହିଁ ।

୬ ଈଶ୍ୱର ଯୋହନ ନାମକ ତାଙ୍କର ଜଣେ ଦୂତଙ୍କୁ ପଠାଇଲେ ।
୭ ସେ ଲୋକମାନଙ୍କୁ ଜ୍ୟୋତିଃ ସମ୍ପର୍କରେ ସାକ୍ଷ୍ୟ ଦେବାକୁ ଆସିଥିଲେ ।
ଲୋକମାନେ ଯେପରି ତାଙ୍କର ସାକ୍ଷ୍ୟ ଶୁଣି ବିଶ୍ୱାସ କରିବେ, ସେଥିପାଇଁ
୮ ସେ ଆସିଥିଲେ । ସେ ନିଜେ ସେହି ଜ୍ୟୋତିଃ ନ ଥିଲେ, କିନ୍ତୁ
୯ ଜ୍ୟୋତିଃଙ୍କ ସମ୍ପର୍କରେ ସାକ୍ଷ୍ୟ ଦେବାପାଇଁ ଆସିଥିଲେ । ସେହି ବାକ୍ୟହିଁ
ପ୍ରକୃତ ଜ୍ୟୋତିଃ, ସେ ଆସି ପ୍ରତ୍ୟେକ ମନୁଷ୍ୟକୁ ଆଲୋକିତ
କରନ୍ତି ।

୧୦ ସେ ଜଗତରେ ଥିଲେ । ଈଶ୍ୱର ଜଗତକୁ ସେହି ବାକ୍ୟଦ୍ୱାରା ନିର୍ମିତ
୧୧ କଲେ, ତଥାପି ଜଗତ ତାଙ୍କୁ ଚିହ୍ନି ପାରିଲା ନାହିଁ । ସେ ତାଙ୍କର
ରାଜ୍ୟକୁ ଆସିଲେ, କିନ୍ତୁ ତାଙ୍କ ନିଜ ଲୋକେ ତାଙ୍କୁ ଗ୍ରହଣ କଲେ
୧୨ ନାହିଁ । କିନ୍ତୁ କେତେକ ତାଙ୍କୁ ଗ୍ରହଣ କଲେ ଏବଂ ତାଙ୍କଠାରେ
ବିଶ୍ୱାସ କଲେ । ଏହି ବିଶ୍ୱାସୀମାନଙ୍କୁ ସେ ଈଶ୍ୱରଙ୍କ ସନ୍ତାନ

୧୩ ହେବାର ଅଧିକାର ଦେଲେ । ସେମାନେ ମନୁଷ୍ୟ ରକ୍ତରୁ, ଶାରୀରିକ
ଅଭିଳାଷରୁ କିମ୍ବା ପୁରୁଷର ଇଚ୍ଛାରୁ ଜାତ ନ ହୋଇ ସ୍ୱୟଂ ଈଶ୍ୱରଙ୍କ-
ଠାରୁ ଜାତ ହେଲେ ।

୧୪ ସେହି ବାକ୍ୟ ମନୁଷ୍ୟରୂପ ଧାରଣ କରି ଆମ ସହିତ ବାସ
କଲେ । ସେ ଅନୁଗ୍ରହ ଓ ସତ୍ୟରେ ପୂର୍ଣ୍ଣ ଥିଲେ । ପିତାଙ୍କଠାରୁ ଆଗତ
ଅଦ୍ୱିତୀୟ ପୁତ୍ରଙ୍କ ମହିମା ସଦୃଶ ଆମେ ତାଙ୍କ ମହିମା ଦେଖିଲୁ ।

୧୫ ଯୋହନ ତାଙ୍କ ବିଷୟରେ ପରିଚୟ ଦେଇ କହିଲେ, "ଯାହାଙ୍କ
ବିଷୟରେ ମୁଁ କହିଥିଲି ଏ ସେହି । ସେ ମୋ ପରେ ଆସୁଛନ୍ତି, କିନ୍ତୁ
ସେ ମୋର ଅଗ୍ରସ୍ଥାନୀୟ, ମୋର ଜନ୍ମ ପୂର୍ବରୁ ତାଙ୍କର ଅବସ୍ଥିତି
ରହିଛି ।"

୧୬ ସେ ଅନୁଗ୍ରହପୂର୍ଣ୍ଣ । ତାଙ୍କଠାରୁ ଆମେ ବାରମ୍ବାର ଅନୁଗ୍ରହ
୧୭ ପାଇଅଛୁ । ଈଶ୍ୱର ମୋଶାଙ୍କ ଦ୍ୱାରା ବ୍ୟବସ୍ଥା ପ୍ରଦାନ କଲେ, କିନ୍ତୁ
୧୮ ଅନୁଗ୍ରହ ଓ ସତ୍ୟତା ଖ୍ରୀଷ୍ଟଙ୍କ ଦ୍ୱାରା ପ୍ରକାଶିତ ହେଲା । କେହି କେବେ
ଈଶ୍ୱରଙ୍କୁ ଦେଖି ନାହିଁ । କେବଳ ଈଶ୍ୱରଙ୍କ ସହିତ ଥିବା ତାଙ୍କ
ଅଦ୍ୱିତୀୟ ପୁତ୍ର ଈଶ୍ୱରଙ୍କର ପରିଚୟ ଦେଲେ ।

**ଜଳଦୀକ୍ଷାଦାତା ଯୋହନଙ୍କ ବାର୍ତ୍ତା :**

(ମାଥିଉ ୩ : ୧-୧୨ । ମାର୍କ ୧ : ୧୮ । ଲୂକ ୩ : ୧-୧୧ ମଧ୍ୟ
ପାଠ କର ।)

୧୯ ଯିହୁଦୀମାନେ ଯିରୂଶାଲମରୁ ଯାଜକ ଓ ଲେବୀୟମାନଙ୍କୁ
ଯୋହନଙ୍କ ନିକଟକୁ "ଆପଣ କିଏ ?" ବୋଲି ପଚାରିବାକୁ
୨୦ ପଠାଇଲେ । ସେତେବେଳେ ଯୋହନ ନିରୁତ୍ତର ନ ହୋଇ ଅତି ସ୍ପଷ୍ଟ
୨୧ ଭାବରେ କହିଲେ, "ମୁଁ ଖ୍ରୀଷ୍ଟ ନୁହେଁ ।" ସେମାନେ ପଚାରିଲେ

"ତେବେ ଆପଣ କିଏ ? ଏଲୀୟ" ଯୋହନ ଉତ୍ତର ଦେଲେ, "ନା" ।
ସେମାନେ ପୁଣି ପଚାରିଲେ, "ଆପଣ କ'ଣ ସେହି ପ୍ରବକ୍ତା ?" ସେ
୨୨ ଉତ୍ତର ଦେଲେ, "ନା ।" ସେମାନେ ପଚାରିଲେ, "ତେବେ ଆପଣ
କିଏ କୁହନ୍ତୁ, ତାହାହେଲେ ଆମକୁ ପଠାଇଥିବା ବ୍ୟକ୍ତିମାନଙ୍କୁ
ଆମେ ଉତ୍ତର ଦେଇ ପାରିବୁ । ଆପଣ ନିଜ ବିଷୟରେ କ'ଣ
୨୩ କହୁଛନ୍ତି ?" ସେ କହିଲେ, "ପ୍ରବକ୍ତା ଯିଶାୟଙ୍କ ବାଣୀ ଅନୁଯାୟୀ
ପ୍ରଭୁଙ୍କର ଆଗମନ ପାଇଁ ମାର୍ଗ ସଳଖ କର, ଏହି ଉଦବାଣୀ ପ୍ରାନ୍ତରରେ
ପ୍ରଚାର କରୁଥିବା ମୁଁ ଏକ ରବ ।"

୨୪,୨୫ ଫାରୂଶୀମାନଙ୍କ ଦ୍ୱାରା ପ୍ରେରିତ ହୋଇଥିବା ଲୋକମାନେ ତାଙ୍କୁ
ପଚାରିଲେ, "ଆପଣ ଯଦି ଖ୍ରୀଷ୍ଟ ବା ଏଲୀୟ ବା ସେହି ପ୍ରବକ୍ତା ନୁହଁନ୍ତି,
୨୬ ତେବେ କାହିଁକି ଜଳଦୀକ୍ଷା ଦେଉଛନ୍ତି ?" ଯୋହନ ଉତ୍ତର ଦେଲେ,
୨୭ "ମୁଁ ତ କେବଳ ଜଳ ଦ୍ୱାରା ଦୀକ୍ଷା ଦେଉଛି । କିନ୍ତୁ ତୁମ ମଧ୍ୟରେ ଏପରି
ଜଣେ ଅଛନ୍ତି, ଯାହାଙ୍କୁ ତୁମ ଜାଣ ନାହିଁ । ସେ ମୋ ପରେ ଆସୁଛନ୍ତି :
ତାଙ୍କର ପାଦୁକାର ବନ୍ଧନ ଫିଟାଇବାକୁ ମୁଁ ଯୋଗ୍ୟ ନୁହେଁ ।"

୨୮ ଯୋହନ ଜଳଦୀକ୍ଷା ଦେଉଥିବା ଯର୍ଦ୍ଦନ ନଦୀର ଅପରପାର୍ଶ୍ୱସ୍ଥ
ବେଥାନୀ ଗ୍ରାମରେ ଏହି ସବୁ ଘଟଣା ଘଟିଥିଲା ।

## ଈଶ୍ୱରଙ୍କ ମେଷଶାବକ :

୨୯ ତା' ପରଦିନ ତାଙ୍କ ନିକଟକୁ ଯୀଶୁଙ୍କୁ ଆସୁଥିବାର ଦେଖି
ଯୋହନ କହିଲେ, "ଏ ସେହି ଈଶ୍ୱରଙ୍କ ମେଷଶାବକ, ଯେ ଜଗତର
୩୦ ପାପରାଶି ବହି ନେଇଯାନ୍ତି, ଯାହାଙ୍କ ସମ୍ପର୍କରେ ମୁଁ କହୁଥିଲି, ସେ
ମୋର ଅଗ୍ରସ୍ଥାନୀୟ-ମୋର ଜନ୍ମ ପୂର୍ବରୁ ତାଙ୍କର ଅବସ୍ଥିତି ରହିଛି, ଏ
୩୧ ସେହି । ଏ ଯେ ସେହି ବ୍ୟକ୍ତି ତାହା ମୁଁ ଜାଣି ନ ଥିଲି, ମାତ୍ର ତାଙ୍କୁ
ଇସ୍ରାଏଲ ଜାତି ନିକଟରେ ଚିହ୍ନାଇ ଦେବାପାଇଁ ମୁଁ ଏଠାରେ
ଜଳଦୀକ୍ଷା ଦେବାକୁ ଆସିଛି ।"

୩୨ ଯୋହନ ସାକ୍ଷ୍ୟ ଦେଇ କହିଲେ, "ମୁଁ ପବିତ୍ର ଆତ୍ମାଙ୍କୁ କପୋତ
ରୂପରେ ସ୍ୱର୍ଗରୁ ଅବତରଣ କରି ଯୀଶୁଙ୍କ ଉପରେ ଅବସ୍ଥାନ କରୁଥିବା
୩୩ ଦେଖିଅଛି । ଏ ଯେ ସେହି ବ୍ୟକ୍ତି ତାହା ମୁଁ ଜାଣି ନ ଥିଲି, କିନ୍ତୁ
ଜଳଦୀକ୍ଷା ଦେବାପାଇଁ ଯେଉଁ ଈଶ୍ୱର ମୋତେ ପଠାଇଥିଲେ, ସେ
କହିଥିଲେ, 'ଯେଉଁ ବ୍ୟକ୍ତିଙ୍କ ଉପରେ ପବିତ୍ର ଆତ୍ମା ଅବତରଣ କରି
ଅବସ୍ଥାନ କରିବାର ଦେଖିବ, ସେହି ବ୍ୟକ୍ତି ଯେ ପବିତ୍ର ଆତ୍ମାଙ୍କ ଦ୍ୱାରା
୩୪ ଦୀକ୍ଷା ଦିଅନ୍ତି, ଏହା ଜାଣିବ । ଏହି ବ୍ୟକ୍ତିଙ୍କଠାରେ ତାହା ସଫଳ
ହେବାର ମୁଁ ଦେଖିଲି, ସେଥିପାଇଁ ସେ ଯେ ଈଶ୍ୱରଙ୍କ ପୁତ୍ର, ଏହା
ସାକ୍ଷ୍ୟ ଦେଉଛି ।"

## ଯୀଶୁଙ୍କ ପ୍ରଥମ ଶିଷ୍ୟମାନେ :

୩୫ ଏହି ଘଟଣାର ପରଦିନ ଯୋହନ ତାଙ୍କର ଦୁଇଜଣ ଶିଷ୍ୟଙ୍କ
୩୬ ସହିତ ଠିଆ ହୋଇଥିଲେ । ଯୀଶୁଙ୍କୁ ସେହି ବାଟେ ଦେଇ ଯାଉଥିବା
ଲକ୍ଷ୍ୟ କରି ଯୋହନ କହିଲେ, "ଏହି ଦେଖ, ଈଶ୍ୱରଙ୍କ ମେଷଶାବକ ।"
୩୭ ସେହି ଦୁଇଜଣ ଶିଷ୍ୟ ଏହା ଶୁଣି ଯୀଶୁଙ୍କ ଅନୁଗମନ କଲେ ।
୩୮ ସେମାନଙ୍କୁ ଅନୁଗମନ କରୁଥିବାର ଲକ୍ଷ୍ୟ କରି ଯୀଶୁ ବୁଲିପଡ଼ି
କହିଲେ, "ତୁମେ କଣ ଖୋଜୁଛ ?" ସେମାନେ ପଚାରିଲେ, "ରବ୍ବୀ,
(ଅନୁବାଦ କଲେ ଏହାର ଅର୍ଥ ଗୁରୁ କିମ୍ବା ଶିକ୍ଷକ) ଆପଣ କେଉଁଠାରେ
୩୯ ରହନ୍ତି ?" ଯୀଶୁ କହିଲେ, "ଆସ, ଦେଖିବ ।" ସେମାନେ ଯୀଶୁଙ୍କ
ସଙ୍ଗେ ଯାଇ ତାହାଙ୍କ ରହିବା ସ୍ଥାନ ଦେଖିଲେ ଏବଂ ଦିନର ଅବଶିଷ୍ଟ
ସମୟ ତାଙ୍କ ସହିତ କଟାଇଲେ । ସେତେବେଳେ ଅପରାହ୍ଣ ପ୍ରାୟ ୪
ଘଣ୍ଟା ହୋଇଥିଲା ।

୪୦ ଯୋହନଙ୍କ କଥା ଶୁଣି ଯୀଶୁଙ୍କ ଅନୁଗମନ କରିଥିବା ଶିଷ୍ୟଦ୍ୱୟ
୪୧ ମଧ୍ୟରୁ ଜଣକର ନାମ ଆନ୍ଦ୍ରିୟ । ସେ ଶିମୋନ ପିତରଙ୍କ ଭାଇ । ସେ

ନିଜ ଭାଇ ଶିମୋନ ପିତରଙ୍କ ଦେଖା ପାଇ କହିଲେ, "ଆମେ
୪୨ ମସୀହଙ୍କର ଅର୍ଥାତ ଖ୍ରୀଷ୍ଟଙ୍କର ଦେଖା ପାଇଛୁ ।" ଯୀଶୁଙ୍କ ସହିତ ସାକ୍ଷାତ୍
କରିବା ପାଇଁ ସେ ଶିମୋନଙ୍କୁ ଆଣିଲେ । ଯୀଶୁ ତାଙ୍କୁ ନିରୀକ୍ଷଣଭାବରେ
ଚାହିଁ କହିଲେ, "ତୁମେ ଯୋହନଙ୍କ ପୁତ୍ର ଶିମୋନ, କିନ୍ତୁ ତୁମେ କେଫା
ନାମରେ ଖ୍ୟାତ ହେବ ।" (ଅର୍ଥାତ୍ 'ପିତର ବା 'ଶୈଳ')

## ଫିଲିପ୍ପ ଓ ନଥନୟେଲଙ୍କ ପ୍ରତି ଯୀଶୁଙ୍କ ଆହ୍ୱାନ :

୪୩ ତହିଁ ଆରଦିନ ଯୀଶୁ ଗାଲିଲୀକୁ ଯିବାପାଇଁ ମନସ୍ଥ କଲେ । ସେ
ଫିଲିପ୍ପଙ୍କ ଦେଖାପାଇ ତାଙ୍କୁ କହିଲେ, "ମୋର ଅନୁସରଣ କର ।"
୪୪ ଫିଲିପ୍ପ ଆନ୍ଦ୍ରିୟ ଓ ପିତରଙ୍କ ସହର ବେଥସାଇଦାର ଅଧିବାସୀ
୪୫ ଥିଲେ । ଫିଲିପ୍ପ ନଥନୟେଲଙ୍କ ଦେଖାପାଇ କହିଲେ, "ମୋଶାଙ୍କ
ବ୍ୟବସ୍ଥାରେ ଉଲ୍ଲିଖିତ ଓ ପ୍ରବକ୍ତାମାନଙ୍କ ଦ୍ୱାରା ମଧ୍ୟ ଲିଖିତ ସେହି
ବ୍ୟକ୍ତିଙ୍କର ଦେଖାପାଇଛୁ । ସେ ନାଜରତବାସୀ ଯୋସେଫଙ୍କର ପୁତ୍ର
୪୬ ଯୀଶୁ ।" ନଥନୟେଲ କହିଲେ, "ନାଜରତ ! ନାଜରତରୁ କୌଣସି
ଉତ୍ତମ ବସ୍ତୁ କ'ଣ ଉତ୍ପନ୍ନ ହୋଇପାରେ ?" ଫିଲିପ୍ପ ଉତ୍ତର
ଦେଲେ, "ଆସି ଦେଖ ।"

୪୭ ଯୀଶୁ ନଥନୟେଲଙ୍କ ନିକଟଗାମୀ ହେଉଥିବାର ଦେଖି ତାଙ୍କ
ସମ୍ପର୍କରେ କହିଲେ, "ଏ ଜଣେ ପ୍ରକୃତ ଇସ୍ରାଏଲୀୟ ବ୍ୟକ୍ତି, ଯାହାଙ୍କ
୪୮ ଠାରେ ଛଳକପଟ ନାହିଁ ।" ନଥନୟେଲ ତାଙ୍କୁ ପଚାରିଲେ, "ଆପଣ
୪୯ କିପରି ମୋତେ ଚିହ୍ନିଲେ ?" ଯୀଶୁ ଉତ୍ତର ଦେଲେ "ଫିଲିପ୍ପ
ତୁମକୁ ଡାକିବା ପୂର୍ବରୁ ମୁଁ ତୁମକୁ ଡିମିରି ଗଛମୂଳେ ଦେଖିଥିଲି ।"
ନଥନୟେଲ କହିଲେ, "ହେ ଗୁରୁ, ଆପଣହିଁ ଈଶ୍ୱରଙ୍କ ପୁତ୍ର—
୫୦ ଇସ୍ରାଏଲର ରଜା ।" ଯୀଶୁ କହିଲେ, "ଡିମିରି ଗଛମୂଳେ ତୁମକୁ

ଦେଖିଥିଲି ବୋଲି ମୁଁ କହିବାରୁ କଣ ତୁମେ ବିଶ୍ୱାସ କରୁଛ ?
୫୧ ଏହାଠାରୁ ଆହୁରି ମହତ୍ତର ବିଷୟମାନ ତୁମେ ଦେଖିବ । ଏପରିକି ସ୍ୱର୍ଗ
ଉନ୍ମୁକ୍ତ ହୋଇ ଈଶ୍ୱରଙ୍କ ଦୂତମାନଙ୍କୁ ମନୁଷ୍ୟପୁତ୍ରଙ୍କ ମଧ୍ୟ ଦେଇ
ଆରୋହଣ ଓ ଅବତରଣ କରିବା ଦେଖିବ ।"

## କାନ୍ନା ସହରର ଏକ ବିବାହ-ଉତ୍ସବ

୧ ଏହି ଘଟଣାର ଦୁଇ ଦିନ ପରେ ଗାଲିଲୀର କାନ୍ନାରେ ଏକ
ବିବାହ ଉତ୍ସବ ପାଳିତ ହେଉଥିଲା । ଯୀଶୁଙ୍କ ମାଁ ସେଠାରେ ଥିଲେ ।
ଯୀଶୁ ତାଙ୍କ ଶିଷ୍ୟମାନଙ୍କ ସହିତ ବିବାହ ଉତ୍ସବକୁ ନିମନ୍ତ୍ରିତ ହୋଇ-
୩ ଥିଲେ । ଭୋଜିବେଳେ ଦ୍ରାକ୍ଷାରସ ସରିଗଲା । ଯୀଶୁଙ୍କ ମାଁ ଆସି
ଯୀଶୁଙ୍କୁ କହିଲେ, "ସେମାନଙ୍କ ପାଖରେ ଆଉ ଦ୍ରାକ୍ଷାରସ ନାହିଁ ।"
୪ ଯୀଶୁ ତାଙ୍କୁ କହିଲେ, "ମାଁ ! ମୋ କାର୍ଯ୍ୟ ସହିତ ତୁମର କି ସମ୍ପର୍କ
୫ ରହିଛି ? ଏ ପର୍ଯ୍ୟନ୍ତ ମୋ ସମୟ ଆସିନାହିଁ ।" ଯୀଶୁଙ୍କ ମାଁ
ପରିଚାରକମାନଙ୍କୁ କହିଲେ, "ସେ ତୁମକୁ ଯାହା କହିବେ, ତାହା
୬ କର ।" ଯିହୁଦୀମାନଙ୍କ ମଧ୍ୟରେ ଶୁଦ୍ଧୀକରଣ ରୀତି ପ୍ରଚଳିତ ଥିଲା ।
ଏଥିପାଇଁ ସେଠାରେ ବଡ଼ ବଡ଼ ଛଅଟି ପଥରର ପାଣିକୁଣ୍ଡ ଥିଲା ।
ପ୍ରତ୍ୟେକ କୁଣ୍ଡ ପ୍ରାୟ ୧୦୦ ରୁ ୧୫୦ ଲିଟର ପର୍ଯ୍ୟନ୍ତ ପାଣି
ଧରି ପାରିବ ।

୭ ଯୀଶୁ ପରିଚାରକମାନଙ୍କୁ କହିଲେ, "କୁଣ୍ଡଗୁଡ଼ିକରେ ପାଣି
ପୂରାଅ ।" ସେମାନେ କୁଣ୍ଡର ଫନ୍ଦ ପର୍ଯ୍ୟନ୍ତ ପାଣି ପୂରାଇଲେ । ଯୀଶୁ
ସେମାନଙ୍କୁ କହିଲେ, "ବର୍ତ୍ତମାନ ସେଥିରୁ କିଛି ଜଳ ନେଇ ଭୋଜି-
ପରିଚାଳକଙ୍କ ନିକଟକୁ ନେଇଯାଅ ।" ସେମାନେ ତାଙ୍କ ପାଖକୁ ଜଳ
୯ ନେଇଗଲେ । ଭୋଜିପରିଚାଳକ ଦ୍ରାକ୍ଷାରସରେ ପରିଣତ ହୋଇଥିବା

ଜଳକୁ ଚାଖିଲେ । ଦ୍ରାକ୍ଷାରସ କେଉଁଠାରୁ ଆସିଲା ସେ ଜାଣି ନ ଥିଲେ,
୧୦ କିନ୍ତୁ ପାଣି ଆଣିଥିବା ପରିଚାରକମାନେ ଜାଣିଥିଲେ । ସେ ବରଙ୍କୁ
ଡାକି କହିଲେ, "ସମସ୍ତେ ଭୋଜରେ ପ୍ରଥମେ ଭଲ ଦ୍ରାକ୍ଷାରସ ପରି-
ବେଷଣ କରଥାନ୍ତି, ଅତିଥିମାନେ ପ୍ରଚୁର ପରିମାଣରେ ପିଇ ସାରିଲା
ପରେ ସାଧାରଣ ଦ୍ରାକ୍ଷାରସ ବାହାର କରନ୍ତି, କିନ୍ତୁ ତୁମେ ଭଲ ଦ୍ରାକ୍ଷା-
ରସ ଭୋଜ ଶେଷପର୍ଯ୍ୟନ୍ତ ରଖିଛ !"

୧୧ ଯୀଶୁ ଗାଲିଲୀର କାନ୍ନା ସହରରେ ଏହି ଅଲୌକିକ କାର୍ଯ୍ୟଦ୍ୱାରା ତାଙ୍କର ଐଶ୍ୱରିକ ମହିମା ପ୍ରଥମେ ସର୍ବସାଧାରଣରେ ପ୍ରକାଶିତ କଲେ ଏବଂ ତାଙ୍କର ଶିଷ୍ୟମାନେ ତାଙ୍କ ଉପରେ ବିଶ୍ୱାସ କଲେ ।

୧୨ ବିବାହ ଉତ୍ସବ ପରେ ସେ ତାଙ୍କ ମାଁ, ଭାଇ ଓ ଶିଷ୍ୟମାନଙ୍କ ସହିତ କର୍ଫନାହୂମକୁ କିଛି ଦିନପାଇଁ ଗଲେ ।

## ଯୀଶୁଙ୍କ ମନ୍ଦିରରେ ପ୍ରବେଶ :

(ମାଥିଉ ୨୧ : ୧୨-୧୩ । ମାର୍କ ୧୧ : ୧୫-୧୭ । ଲୂକ ୧୯ : ୪୫-୪୬ ମଧ୍ୟ ପାଠ କର ।)

୧୩ ସେତେବେଳେ ଯିହୁଦୀମାନଙ୍କର ନିସ୍ତାରପର୍ବ ସମୟ ପାଖେଇ
୧୪ ଆସୁଥିଲା, ତେଣୁ ଯୀଶୁ ଯିରୁଶାଲମକୁ ଗଲେ । ମନ୍ଦିର ପ୍ରାଙ୍ଗଣରେ
ବ୍ୟବସାୟୀମାନେ ଗୋରୁ, ମେଣ୍ଢା ଓ ପାରା ବିକ୍ରି କରୁଥିବା ସେ
ଦେଖିଲେ ଏବଂ ମୁଦ୍ରା ବଦଳକାରୀମାନଙ୍କୁ ବସିଥିବାର ଲକ୍ଷ୍ୟ କଲେ ।
୧୫ ଯୀଶୁ ଦଉଡ଼ିରେ ଗୋଟିଏ ଛାଟ ତିଆରି କରି ଗୋମେଣ୍ଢାଦି ସହିତ
ସମସ୍ତଙ୍କୁ ମନ୍ଦିରରୁ ତଡ଼ି ଦେଲେ, ମୁଦ୍ରା ବଦଳକାରୀମାନଙ୍କର ପଇସା-
ପତ୍ର ତଳେ ବିଛି ଦେଲେ, ସେମାନଙ୍କର ମେଜ ସବୁ ଓଲଟାଇ
୧୬ ପକାଇଲେ । ସେ ପାରାବିକ୍ରୟକାରୀମାନଙ୍କୁ ଆଦେଶ ଦେଲେ,
"ଏଗୁଡ଼ାକୁ ଏଠାରୁ ବାହାରକୁ କାଢ଼ିନିଅ । ମୋର ପିତାଙ୍କ ଗୃହକୁ

ବଜାର କରି ଦିଅ ନାହିଁ !" ସେତେବେଳେ ତାଙ୍କ ଶିଷ୍ୟମାନଙ୍କର ଏହି
ଶାସ୍ତ୍ରବାକ୍ୟ ମନେ ପଡ଼ିଲା, "ତୁମ ଗୃହପ୍ରତି ଉଦ୍‌ଯୋଗ ମୋତେ ଅଗ୍ନି
ଭଳି ଦଗ୍ଧ କରି ପକାଇବ ।"

୧୮ ଯିହୁଦୀମାନେ ପୁଣି ଆସି ତାଙ୍କୁ ପଚାରିଲେ, "ତୁମେ କେଉଁ
ଅଲୌକିକ କ୍ରିୟା ଦ୍ୱାରା ଦର୍ଶାଇ ପାରିବ ଯେ, ଏସବୁ କରିବାର
୧୯ ଅଧିକାର ତୁମର ଅଛି ?" ଯୀଶୁ ସେମାନଙ୍କୁ ଉତ୍ତର ଦେଇ କହିଲେ,
"ଏହି ମନ୍ଦିରକୁ ଧ୍ୱଂସ କର, ତିନୋଟି ଦିନ ମଧ୍ୟରେ ମୁଁ ତାକୁ ଗଢ଼ିଦେବି ।"
୨୦ ସେମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କଣ ! ଏହି ମନ୍ଦିର ନିର୍ମିତ
ହେବାପାଇଁ ଛୟାଳିଶ ବର୍ଷ ଲାଗିଛି ଅଥଚ ତୁମେ ତାକୁ ତିନି ଦିନରେ
ଗଢ଼ି ଦେବ ?"

୨୧ କିନ୍ତୁ "ଏହି ମନ୍ଦିର," କହିଲା ବେଳେ ସେ ନିଜ ଶରୀର ରୂପ
୨୨ ମନ୍ଦିର ସମ୍ପର୍କରେ କହୁଥିଲେ । ସେ ଯେତେବେଳେ ମୃତ୍ୟୁରୁ ଉତ୍ଥିତ
ହେଲେ, ଶିଷ୍ୟମାନେ ତାଙ୍କର ଏହି କଥା ସ୍ମରଣ କଲେ ଏବଂ ଧର୍ମଶାସ୍ତ୍ର
ଓ ଯୀଶୁଙ୍କ ମୁଖନିଃସୃତ ବାକ୍ୟରେ ବିଶ୍ୱାସ କଲେ

## ଯୀଶୁ ମନୁଷ୍ୟମାନଙ୍କୁ ଜାଣିଥିଲେ :

୨୩ ନିସ୍ତାରପର୍ବ ଉତ୍ସବ ସମୟରେ ଯୀଶୁ ଯିରୂଶାଲମରେ ରହୁଥିଲେ ।
ଅନେକ ଲୋକ ତାଙ୍କ ଦ୍ୱାରା ସାଧିତ ଅଲୌକିକ କ୍ରିୟାସମୂହ ଦେଖି
୨୪ ତାଙ୍କ ନାମରେ ବିଶ୍ୱାସ କଲେ । କିନ୍ତୁ ସେମାନଙ୍କ ବିଶ୍ୱାସ ଉପରେ
ଯୀଶୁଙ୍କର ଭରସା ନ ଥିଲା । କାରଣ ସେ ସମସ୍ତଙ୍କୁ ଜାଣିଥିଲେ ।
୨୫ ମନୁଷ୍ୟମାନଙ୍କ ସମ୍ପର୍କରେ ତାଙ୍କୁ କେହି ଜଣାଇବା ଆବଶ୍ୟକ ନ ଥିଲା,
କାରଣ ସେମାନଙ୍କ ହୃଦୟରେ କଅଣ ଅଛି ସେ ଜାଣିଥିଲେ ।

## ଯୀଶୁ ଓ ନୀକଦୀମ :

୩ ନୀକଦୀମ ନାମରେ ଫାରୂଶୀ ସମ୍ପ୍ରଦାୟର ଜଣେ ଯିହୁଦୀୟ
୨ ନେତା ଥିଲେ । ସେ ରାତରେ ଯୀଶୁଙ୍କ ନିକଟକୁ ଆସି କହିଲେ,
"ଗୁରୁ ! ଆମେ ଜାଣୁ ଯେ, ଆପଣ ଈଶ୍ୱରଙ୍କଠାରୁ ଆଗତ ଜଣେ ଗୁରୁ ;
କାରଣ ଯେଉଁ ଅଲୌକିକ ଚିହ୍ନସବୁ ଦେଖାଉଛନ୍ତି, ଈଶ୍ୱରସହବର୍ତ୍ତୀ ନ
୩ ଥିଲେ କେହି ଏ ପ୍ରକାର କରି ପାରିବ ନାହିଁ ।" ଯୀଶୁ ଉତ୍ତର ଦେଇ
କହିଲେ, "ମୁଁ ତୁମକୁ ସତ୍ୟ କହୁଛି, ପୁନରାୟ ଜନ୍ମଲାଭ ନ କଲେ
୪ କେହି ଈଶ୍ୱରଙ୍କ ରାଜ୍ୟ ଦେଖି ପାରିବ ନାହିଁ ।" ନୀକଦୀମ ପଚାରିଲେ,
"ଜଣେ ବୃଦ୍ଧ ଲୋକ କିପରି ଜନ୍ମଲାଭ କରିପାରେ ? ସେ କ'ଣ ଦ୍ୱିତୀୟ
୫ ଥର ମାତାର ଗର୍ଭସ୍ଥ ହୋଇ ପୁଣି ଥରେ ଜନ୍ମଲାଭ କରିବ ?" ଯୀଶୁ
ଉତ୍ତର ଦେଲେ, "ଯେ ପର୍ଯ୍ୟନ୍ତ ଜଣେ ଜଳ ଓ ଆତ୍ମାରୁ ଜାତ ନ
ହୋଇଛି, ସେ ଈଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରି ପାରିବ ନାହିଁ, ଏହା
୬ ସତ୍ୟ ।" ମନୁଷ୍ୟ ମାନବଙ୍କ ପିତାମାତାଙ୍କଠାରୁ ଶାରୀରିକ ଭାବରେ ଜାତ
୭ ହୁଏ ଏବଂ ଆତ୍ମାଙ୍କଠାରୁ ଆତ୍ମିକ ଭାବରେ ଜାତ ହୁଏ । ତୁମମାନଙ୍କ ଯେ
ନିଶ୍ଚୟ ପୁନରାୟ ଜନ୍ମଗ୍ରହଣ କରିବାକୁ ହେବ, ମୋର ଏ ଉକ୍ତି ଶୁଣି
୮ ଚମତ୍କୃତ ହୁଅ ନାହିଁ । ପବନ ତା'ର ଇଚ୍ଛାନୁଯାୟୀ ବହେ, ତୁମେ
କେବଳ ତା'ର ନାଦଶବ୍ଦ ଶୁଣିପାର । କିନ୍ତୁ ତାହା କେଉଁଠାରୁ ଆସେ
ଏବଂ କେଉଁଠାକୁ ଯାଏ, ତାହା ତୁମେ ଜାଣ ନାହିଁ. ଆତ୍ମାଙ୍କଠାରୁ ଜାତ
୯ ପ୍ରତ୍ୟେକ ଲୋକ ସେହିପରି ।" ନୀକଦୀମ ପଚାରିଲେ, "ଏହା କିପରି
୧୦ ହୋଇପାରେ ? ଯୀଶୁ ଉତ୍ତର ଦେଲେ, "ତୁମେ ଜଣେ ଇସ୍ରାଏଲୀୟ
୧୧ ଗୁରୁ, ତଥାପି ଏସବୁ ବୁଝି ପାରୁନାହଁ ? ମୁଁ ସତ୍ୟକରି କହୁଛି, ଆମେ
ଯାହା ଜାଣୁ, ତାହା କହୁ, ଯାହା ଦେଖିଛୁ ତାହା ସାକ୍ଷ୍ୟ ଦେଉ, ଅଥଚ
୧୨ ତୁମେ ଆମର ସାକ୍ଷ୍ୟ ଗ୍ରହଣ କରୁନାହଁ । ତୁମକୁ ପାର୍ଥିବ ଘଟଣା
ସମ୍ପର୍କରେ କହିଲେ, ଯଦି ତୁମେ ବିଶ୍ୱାସ କରୁନାହଁ, କିପରି ସ୍ୱର୍ଗୀୟ

୧୩ ଘଟଣା ବିଷୟ କହିଲେ ତୁମେ ମୋତେ ବିଶ୍ୱାସ କରିବ ? ଯେଉଁ ମନୁଷ୍ୟ-
ପୁତ୍ର ସ୍ୱର୍ଗରୁ ଅବତରଣ କରିଛନ୍ତି ତାଙ୍କ ବିନା କେହି ସ୍ୱର୍ଗାରୋହଣ
କରିନାହିଁ ।

୧୪ ପ୍ରାନ୍ତରରେ ମୋଶା ଯେପରି ପିତ୍ତଳ ସର୍ପକୁ ଦଣ୍ଡ ଉପରେ
ଊର୍ଦ୍ଧ୍ୱକୁ ଉଠାଇ ଥିଲେ, ସେହିରୂପେ ମନୁଷ୍ୟପୁତ୍ର ନିଶ୍ଚୟ ଊର୍ଦ୍ଧ୍ୱକୁ
୧୫ ଉଠାଯିବେ । ଯେ କେହି ତାଙ୍କୁ ବିଶ୍ୱାସ କରେ, ସେ ଅନନ୍ତ ଜୀବନ
୧୬ ଲାଭ କରେ । କାରଣ ଈଶ୍ୱର ଜଗତକୁ ଏପରି ପ୍ରେମ କଲେ ଯେ, ସେ
ନିଜର ଏକମାତ୍ର ପୁତ୍ରଙ୍କୁ ଦେଲେ ; ଯେ କେହି ତାଙ୍କୁ ବିଶ୍ୱାସ କରେ,
୧୭ ସେ ବିନଷ୍ଟ ନ ହୋଇ ଅନନ୍ତଜୀବନ ପାଇବ । ଈଶ୍ୱର ତାଙ୍କ ପୁତ୍ରଙ୍କୁ
ଜଗତର ବିଚାରକ ରୂପେ ନୁହେଁ, କିନ୍ତୁ ଜଗତର ଉଦ୍ଧାରକର୍ତ୍ତା ରୂପେ
ପଠାଇଲେ ।

୧୮ ଯେ କେହି ତାଙ୍କୁ ବିଶ୍ୱାସ କରେ, ସେ ବିଚାରିତ ହୁଏ ନାହିଁ, ଯେ
କେହି ଈଶ୍ୱରଙ୍କ ଏକମାତ୍ର ପୁତ୍ରଙ୍କ ନାମରେ ବିଶ୍ୱାସ କରେ ନାହିଁ, ସେ
୧୯ ବିଚାରିତ ହୋଇ ସାରିଲାଣି । ଏହି ପ୍ରକାର ଭାବରେ ନ୍ୟାୟ ବିମଳ-
ଜ୍ୟୋତିଃ ଜଗତରେ ପ୍ରକାଶିତ ହୋଇଅଛି, କିନ୍ତୁ ଲୋକେ ଜ୍ୟୋତିଃ
ଅପେକ୍ଷା ଅନ୍ଧକାରକୁ ଅଧିକ ପସନ୍ଦ କଲେ, କାରଣ ସେମାନଙ୍କର କାର୍ଯ୍ୟ-
୨୦ କଳାପ ମନ୍ଦ ଓ ଅସତ୍ୟ । କୁକର୍ମକାରୀ ଜ୍ୟୋତିଃକୁ ଘୃଣା କରେ,
ତା'ର ମନ୍ଦକର୍ମ ସବୁ ପ୍ରକାଶିତ ହୋଇଯିବା ଆଶଙ୍କାରେ ସେ ଜ୍ୟୋତିଃ
୨୧ ଠାରୁ ଦୂରେଇ ରହେ । କିନ୍ତୁ ସତ୍ୟ ଆଚରଣକାରୀ ନିଜ କର୍ମରେ
ଈଶ୍ୱରଙ୍କ ଇଚ୍ଛା କରୁଥାଏ, ଏଣୁ ଏହା ଯେପରି ପ୍ରକାଶିତ ହେବ ଏଥି-
ପାଇଁ ସେ ଜ୍ୟୋତିଃ ନିକଟକୁ ଆସେ ।"

**ଯୀଶୁ ଓ ଯୋହନ :**

୨୨ ପରେ ଯୀଶୁ ଓ ତାଙ୍କ ଶିଷ୍ୟମାନେ ଯିହୁଦା ପ୍ରଦେଶକୁ ଗଲେ ।
୨୩ ସେମାନେ କିଛି କାଳ ସେଠାରେ ରହି ଜଳଦୀକ୍ଷା ଦେଲେ । ଶାଲମ

ନିକଟବର୍ତ୍ତୀ ଏନୋନରେ ପ୍ରଚୁର ପାଣି ଥିବାରୁ ଯୋହନ ସେଠାକୁ
୨୪ ଆସୁଥିବା ଲୋକମାନଙ୍କୁ ଜଳଦୀକ୍ଷା ଦେଉଥିଲେ । କାରଣ ଦୀକ୍ଷାଦାତା
ଯୋହନ ସେ ପର୍ଯ୍ୟନ୍ତ କାରାଗାରସ୍ଥ ହୋଇ ନ ଥିଲେ ।

୨୫ ଶୁଦ୍ଧୀକରଣ ସମ୍ବନ୍ଧରେ ଜଣେ ଯିହୁଦୀଙ୍କ ସହିତ ଯୋହନଙ୍କ
୨୬ କେତେକ ଶିଷ୍ୟମାନଙ୍କର ଯୁକ୍ତିତର୍କ ଲାଗିଲା । ସେମାନେ (ଯୋହନଙ୍କ
ଶିଷ୍ୟମାନେ) ଯୋହନଙ୍କ ନିକଟକୁ ଆସି କହିଲେ, "ଗୁରୁ ! ଯର୍ଦ୍ଦନ
ନଦୀର ଅରପାଖରେ ଆପଣଙ୍କ ସହିତ ଥିବା ଯେଉଁ ବ୍ୟକ୍ତିଙ୍କ
ସମ୍ପର୍କରେ ଆପଣ ସାକ୍ଷ୍ୟ ଦେଇଥିଲେ, ଦେଖନ୍ତୁ, ସେ ମଧ୍ୟ ଜଳଦୀକ୍ଷା
୨୭ ଦେଉଛନ୍ତି ଏବଂ ଲୋକେ ତାଙ୍କ ନିକଟକୁ ଯାଉଛନ୍ତି ।" ଯୋହନ
୨୮ ଉତ୍ତର ଦେଲେ, "ସ୍ୱର୍ଗରୁ ଦିଆ ନ ହେଲେ ମଣିଷ କିଛି ପାଇ ପାରେ
୨୯ ନାହିଁ । 'ମୁଁ ତ ଖ୍ରୀଷ୍ଟ ନୁହେଁ କିନ୍ତୁ ତାଙ୍କର ଅଗ୍ରଦୂତ'—ମୋର ଏ
ଉକ୍ତିର ତୁମେମାନେ ସାକ୍ଷୀ । କନ୍ୟା ଯାହାଙ୍କର ସେ ବର, କିନ୍ତୁ ବରଙ୍କ
ବନ୍ଧୁ ନିକଟରେ ଠିଆହୋଇ ତାଙ୍କ କଥା ଶୁଣେ ଏବଂ ବରଙ୍କ କଥା
୩୦ ଶୁଣି ତା'ର ଚିତ୍ତ ଆନନ୍ଦରେ ପୂର୍ଣ୍ଣ ହୁଏ । ମୋର ଚିତ୍ତ ମଧ୍ୟ ସେହିପରି
ଆନନ୍ଦରେ ପୂର୍ଣ୍ଣ ହେଉଛି । ତାଙ୍କର ମହତ୍ତ୍ୱ ଉତ୍ତରୋତ୍ତର ବୃଦ୍ଧି ପାଇବ
ଏବଂ ମୋର ଶ୍ରେଷ୍ଠତା କ୍ରମଶଃ ହ୍ରାସ ପାଇବ ।

## ସ୍ୱର୍ଗରୁ ଆଗତ ବ୍ୟକ୍ତି :

୩୧ ଯେ ଊର୍ଦ୍ଧ୍ୱରୁ ଆସନ୍ତି, ସେ ସମସ୍ତଙ୍କଠାରୁ ଊର୍ଦ୍ଧ୍ୱରେ, ଯେ
ପୃଥିବୀରୁ ଉତ୍ପନ୍ନ, ସେ ପାର୍ଥିବ ଏବଂ ତା'ର କଥା ମଧ୍ୟ ପାର୍ଥିବ । ଯେ
୩୨ ସ୍ୱର୍ଗରୁ ଆଗତ, ସେ ସମସ୍ତଙ୍କଠାରୁ ଶ୍ରେଷ୍ଠ, ସେ ଯାହା ଦେଖିଛନ୍ତି ଏବଂ
ଶୁଣିଛନ୍ତି ସେ ସମ୍ପର୍କରେ ସାକ୍ଷ୍ୟ ଦିଅନ୍ତି, କିନ୍ତୁ ତାଙ୍କର ବାଣୀ କେହି
୩୩ ଗ୍ରହଣ କରେ ନାହିଁ । ତାଙ୍କ ବାଣୀରେ ବିଶ୍ୱାସକାରୀ, 'ଈଶ୍ୱର
୩୪ ଯେ ସତ୍ୟ' ଏଥିରେ ସ୍ୱୀକୃତ ହୁଏ । ଯେଉଁ ବ୍ୟକ୍ତି ଈଶ୍ୱରପ୍ରେରିତ ସେ
ଈଶ୍ୱରଙ୍କ ବାଣୀ ପ୍ରଚାର କରନ୍ତି, କାରଣ ତାଙ୍କୁ ଅପରିମିତ ଭାବେ

୩୫ ଈଶ୍ୱରଙ୍କ ଆତ୍ମା ପ୍ରଦତ୍ତ ହୋଇଅଛି । ପିତା ପୁତ୍ରଙ୍କୁ ପ୍ରେମ କରନ୍ତି ଏବଂ
୩୬ ସମସ୍ତ ବିଷୟ ତାଙ୍କ ହାତରେ ଅର୍ପଣ କରିଛନ୍ତି । ପୁତ୍ରଙ୍କଠାରେ ଯେଉଁ
ବ୍ୟକ୍ତି ବିଶ୍ୱାସ କରେ, ସେ ଅନନ୍ତଜୀବନ ପାଇଅଛି, କିନ୍ତୁ ଯେ ପୁତ୍ରଙ୍କୁ
ଅମାନ୍ୟ କରେ, ସେ କଦାପି ସେହି ଜୀବନ ପାଇବ ନାହିଁ, ତା' ଉପରେ
ଈଶ୍ୱରଙ୍କ କ୍ରୋଧ ଅନନ୍ତ କାଳ ପର୍ଯ୍ୟନ୍ତ ବର୍ତ୍ତିବ ।

## ଯୀଶୁ ଓ ଶମିରୋଣୀୟା :

୪ ଫାରୂଶୀମାନେ ଶୁଣିଲେ ଯେ, ଯୀଶୁ ଯୋହନଙ୍କ ଅପେକ୍ଷା ଅଧିକ
୨ ଲୋକଙ୍କୁ ଶିଷ୍ୟ କରି ସେମାନଙ୍କୁ ଜଳଦୀକ୍ଷା ଦେଉଛନ୍ତି । (ପ୍ରକୃତରେ
ଯୀଶୁ ନିଜେ କାହାକୁ ଜଳଦୀକ୍ଷା ଦେଉ ନ ଥିଲେ—ତାଙ୍କର ଶିଷ୍ୟମାନେ
୩ ଦେଉଥିଲେ ।) ଯେତେବେଳେ ଏପରି କୁହା ଯାଉଥିବାର ଯୀଶୁ
୪ ଶୁଣିଲେ, ସେ ଯିହୁଦା ପ୍ରଦେଶ ଛାଡ଼ି ଗାଲିଲୀକୁ ଫେରିଗଲେ । ଯିବା-
ବାଟରେ ତାଙ୍କୁ ଶମିରୋଣ ପ୍ରଦେଶ ମଧ୍ୟ ଦେଇ ଯିବାକୁ ପଡ଼ିଲା ।

୫ ସେ ଶମିରୋଣର ସୁଖାର ନାମକ ଏକ ସହରରେ ଆସି
ପହଞ୍ଚିଲେ । ଏହି ସହର ଯାକୁବ ନିଜ ପୁଅ ଯୋସେଫଙ୍କୁ ଦେଇଥିବା
୬ ଜମି ନିକଟରେ ଅବସ୍ଥିତ । ଏହି ସ୍ଥାନରେ ଯାକୁବଙ୍କ କୂପ ଥିଲା ।
ପଥଶ୍ରାନ୍ତ ଯୀଶୁ ସେହି କୂପ ନିକଟରେ ବସି ପଡ଼ିଲେ । ସେତେବେଳେ
ପ୍ରାୟ ମଧ୍ୟାହ୍ନ ।

୭ ଜଣେ ଶମିରୋଣୀୟା ପାଣି କାଢିବା ପାଇଁ ଆସିଲା । ଯୀଶୁ ତାକୁ
୮ କହିଲେ, "ମୋତେ ମୁନ୍ଦେ ପାଣି ପିଇବାକୁ ଦିଅ ।" ତାଙ୍କର ଶିଷ୍ୟ-
ମାନେ ସେତେବେଳେ ସହରକୁ ଖାଦ୍ୟ ସାମଗ୍ରୀ କିଣିବାକୁ ବାହାରି
୯ ଯାଇଥିଲେ । ସେହି ନାରୀ ତାଙ୍କୁ କହିଲା, "ଆପଣ ଯିହୁଦୀ ଓ ମୁଁ ଜଣେ
ଶମିରୋଣୀୟା, ଆପଣ କିପରି ମୋ ହାତରୁ ପିଇବାକୁ ମାଗୁଛନ୍ତି ?"
ଶମିରୋଣୀୟ ଓ ଯିହୁଦୀମାନଙ୍କ ମଧ୍ୟରେ ସମ୍ପର୍କ ନ ଥିଲା ।

୧୦ ଯୀଶୁ ଉତ୍ତର ଦେଲେ, "ଈଶ୍ୱରଙ୍କ ଦାନ ସମ୍ପର୍କରେ ଯଦି ତୁମେ ଜାଣି-
ଥାନ୍ତ ଏବଂ ତୁମକୁ ଯେଉଁ ବ୍ୟକ୍ତି ପିଇବାକୁ ମାଗୁଛନ୍ତି ତାଙ୍କୁ ଯଦି
ଚିହ୍ନିଥାନ୍ତ, ତେବେ ତୁମେ ତାଙ୍କୁ ମାଗିଥାନ୍ତ, ସେ ତୁମକୁ ଜୀବନର ଜଳ
୧୧ ଦେଇଥାନ୍ତେ ।" ସେହି ନାରୀ ତାଙ୍କୁ କହିଲା, "ଆଜ୍ଞା ! ଆପଣଙ୍କ
ପାଖରେ ଜଳ କାଢିବା ପାଇଁ କଳସୀ ନାହିଁ ଏବଂ କୂପ ଅତି ଗଭୀର !
୧୨ ତେବେ ଆପଣ କେଉଁଠାରୁ ଏହି ଜୀବନର ଜଳ ଆଣିବେ ? ଏହି କୂପ
ଆମ ପିତୃପୁରୁଷ ଯାକୁବଙ୍କର ଦାନ । ସେ, ତାଙ୍କର ପୁତ୍ରମାନେ ଏବଂ
ଗୋମେଷାଦି ଏହି କୂପଜଳ ବ୍ୟବହାର କରୁଥିଲେ, ତାଙ୍କଠାରୁ କ'ଣ
୧୩ ଆପଣ ମହାନ୍ ?" ଯୀଶୁ କହିଲେ, "ଯେ ଏହି ଜଳ ପିଏ, ସେ ପୁଣି
ଥରେ ତୃଷିତ ହୁଏ । କିନ୍ତୁ ମୋ ପ୍ରଦତ୍ତ ଜଳ ପାନ କରିବା ବ୍ୟକ୍ତି
୧୪ କେବେହେଁ ତୃଷାର୍ତ୍ତ ହେବ ନାହିଁ; ମୁଁ ତାହାକୁ ଯେଉଁ ଜଳ
ଦେବି, ତାହା ଅନନ୍ତଜୀବନଦାୟକ ଜଳର ନିର୍ଝର ସ୍ୱରୂପେ ତାହା-
୧୫ ଠାରେ ଉଚ୍ଛୁଳି ବହୁଥିବ ।" ସେହି ନାରୀ କହିଲା, "ଆଜ୍ଞା ! ମୋତେ
ସେହି ଜଳ ଦିଅନ୍ତୁ, ଯେପରି ମୁଁ ପୁନର୍ବାର ତୃଷିତ ନ ହୁଏ କିମ୍ବା
୧୬ ଏଠାକୁ ମୋତେ ପାଣି ପାଇଁ ଆସିବାକୁ ନ ପଡେ ?" ଯୀଶୁ କହିଲେ,
୧୭ "ଯାଅ, ତୁମ ସ୍ୱାମୀଙ୍କୁ ଡାକି ଏଠାକୁ ଆସ ।" ସେହି ନାରୀ ଉତ୍ତର
୧୮ ଦେଲା, "ମୋର କେହି ସ୍ୱାମୀ ନାହାନ୍ତି ।" ଯୀଶୁ କହିଲେ, "ତୁମର
କେହି ସ୍ୱାମୀ ନାହାନ୍ତି, ଏକଥା ଠିକ୍ କହୁଛ । ତୁମର ପାଞ୍ଚ ସ୍ୱାମୀ ଥିଲେ
ଏବଂ ଯେଉଁ ପୁରୁଷ ପାଖରେ ତୁମେ ଅଛ, ସେ ତୁମର ସ୍ୱାମୀ ନୁହେଁ,
୧୯ ତୁମେ ସତ କଥା କହିଲ ।" ସେ ନାରୀ କହିଲା, "ଆଜ୍ଞା ! ମୁଁ ଜାଣି
୨୦ ପାରୁଛି, ଆପଣ ଜଣେ ପ୍ରବକ୍ତା । ଆମ ପିତୃପୁରୁଷମାନେ ଏହି ପର୍ବତରେ
ଈଶ୍ୱରଙ୍କ ଉପାସନା କଲେ । କିନ୍ତୁ ଆପଣ ଯିହୁଦୀମାନେ କହନ୍ତି ଯେ,
୨୧ ଯିରୂଶାଲମହିଁ ଈଶ୍ୱରଙ୍କ ଉପାସନାସ୍ଥଳୀ ।" ଯୀଶୁ ତାଙ୍କୁ ଉତ୍ତର
ଦେଲେ, "ମୋ କଥା ବିଶ୍ୱାସ କର, ସମୟ ଆସୁଛି, ଯେତେବେଳେ
ଲୋକେ ଏହି ପର୍ବତରେ କିମ୍ବା ଯିରୂଶାଲମରେ ଉପାସନା କରିବେ
୨୨ ନାହିଁ । ତୁମେ କାହାକୁ ଉପାସନା କରୁଛ, ଜାଣ ନାହିଁ, ଆମେ

ଯାହାଙ୍କୁ ଉପାସନା କରୁଛୁ, ତାଙ୍କୁ ଜାଣୁ, କାରଣ ଯିହୁଦୀମାନଙ୍କଠାରୁ
୨୩ ପରିତ୍ରାଣ ଆସୁଛି । ଯେଉଁ ସମୟରେ ସତ୍ୟ ଉପାସକମାନେ ଆତ୍ମାରେ
ଓ ସତ୍ୟତାରେ ପିତାଙ୍କ ଉପାସନା କରିବେ, ଏପରି ସମୟ ଆସୁଛି ପୁଣି
ବର୍ତ୍ତମାନ ମଧ୍ୟ ଅଛି, କାରଣ ପିତା ଏହି ପ୍ରକାର ଉପାସକମାନଙ୍କୁ
୨୪ ଚାହାନ୍ତି । ଈଶ୍ୱର ଆତ୍ମାରୂପୀ, ତେଣୁ ଯେଉଁମାନେ ତାଙ୍କର ଉପାସନା
କରନ୍ତି, ସେମାନେ ସତ୍ୟତା ଓ ଆତ୍ମାରେ ଉପାସନା କରିବା
ଉଚିତ ।"

୨୫ ସେହି ନାରୀ ତାଙ୍କୁ କହିଲା, "ମଶୀହ ଯାହାଙ୍କୁ ଖ୍ରୀଷ୍ଟ କହନ୍ତି
ସେ ଆସିବେ ବୋଲି ମୁଁ ଜାଣେ । ସେ ଆସିଲେ ଆମକୁ ସମସ୍ତ ବିଷୟ
୨୬ ଜଣାଇ ଦେବେ ।" ଯୀଶୁ କହିଲେ, "ମୁଁ ସେହି ଖ୍ରୀଷ୍ଟ, ଯେ ତୁମ
ସହିତ କଥା କହୁଅଛି ।"

୨୭ ଠିକ୍ ସେତେବେଳେ ତାଙ୍କର ଶିଷ୍ୟମାନେ ଆସି ପହଞ୍ଚିଲେ ଏବଂ
ଜଣେ ନାରୀସହ ତାଙ୍କୁ କଥାବାର୍ତ୍ତା କରୁଥିବା ଦେଖି ସେମାନେ ବିସ୍ମିତ
ହେଲେ । କିନ୍ତୁ କେହି ଜଣେ ହେଲେ ସେ ନାରୀ କ'ଣ ଚାହେଁ ଏବଂ
କାହିଁକି ଯୀଶୁ ତା' ସହିତ କଥାବାର୍ତ୍ତା କରୁଛନ୍ତି ବୋଲି ପଚାରି
ପାରିଲେ ନାହିଁ ।

୨୮ ତା'ପରେ ସେହି ନାରୀ ନିଜ କଳସୀ କୂଅ ପାଖେ ଛାଡ଼ି ଦେଇ
୨୯ ସହରକୁ ଫେରିଗଲା ଓ ସମସ୍ତଙ୍କୁ କହିଲା, "ମୁଁ କେବେ କ'ଣ କରିଛି,
ଏସବୁ କଥା ମୋତେ ଜଣେ କହିଦେଲେ, ଆସ ଦେଖିବ, ସେ କଅଣ
୩୦ ଖ୍ରୀଷ୍ଟ ହୋଇ ପାରନ୍ତି ?" ଏହା ଶୁଣି ନଗରବାସୀ ଯୀଶୁଙ୍କ ନିକଟକୁ
ଆସିଲେ ।

୩୧ ଏହି ମଧ୍ୟରେ ଶିଷ୍ୟମାନେ ଯୀଶୁଙ୍କୁ ଅନୁରୋଧ କଲେ, "ଗୁରୁ :
୩୨ ଭୋଜନ କରନ୍ତୁ ।" କିନ୍ତୁ ସେ ଉତ୍ତର ଦେଲେ, "ତୁମେ ଯେଉଁ ଖାଦ୍ୟ

୩୩ ବିଷୟରେ ଜାଣ ନାହିଁ, ଏପରି ଆହାର ମୋର ଅଛି ।" ଶିଷ୍ୟମାନେ
ପରସ୍ପରକୁ ପଚାରିଲେ, "କେହି ତାଙ୍କୁ ଖାଦ୍ୟ ଆଣି ଦେଲା କି ?"
୩୪ ଯୀଶୁ ବୁଝାଇ କହିଲେ, "ଯେଉଁ ଈଶ୍ୱର ମୋତେ ପଠାଇଛନ୍ତି, ତାଙ୍କ
ଇଚ୍ଛା ପାଳନ ଓ ତାଙ୍କ କାର୍ଯ୍ୟ ସଂପନ୍ନ କରିବା ହିଁ ମୋର ଆହାର ।

୩୫ ତୁମେ କୁହ ଯେ, 'ଫସଲ ଅମଳ ହେବାକୁ ଚାରିମାସ ବାକି
ଅଛି' କିନ୍ତୁ କ୍ଷେତର ଚତୁର୍ଦ୍ଦିଗକୁ ଚାହିଁ ଦେଖ, ଶସ୍ୟସବୁ ଅମଳ ହେବା
୩୬ ନିମନ୍ତେ ପାଚିଗଲାଣି । ଶସ୍ୟକଟାଳି ମୂଲ ପାଉଛି ଏବଂ ଅନନ୍ତଜୀବନ
ପାଇଁ ଶସ୍ୟ ସଂଗ୍ରହ କରୁଛି, ଯେପରି ବୁଣାଳି ଓ କଟାଳି ଉଭୟ
୩୭ ଏକତ୍ର ଆନନ୍ଦ କରନ୍ତି । ଏ କଥା ସତ ଯେ, ଜଣେ ବୁଣେ, ଅନ୍ୟ
୩୮ ଜଣେ କାଟେ । ଯେଉଁଠାରେ ତୁମେ ପରିଶ୍ରମ କରିନାହଁ ସେଠାରେ
କାଟିବାପାଇଁ ମୁଁ ତୁମମାନଙ୍କୁ ପଠାଇଲି, ଅନ୍ୟମାନେ ପରିଶ୍ରମ କଲେ
ଏବଂ ତୁମେମାନେ ସେମାନଙ୍କ ପରିଶ୍ରମର ଫଳ ପାଉଛ ।"

୩୯ 'ମୁଁ କେବେ କ'ଣ କରିଛି, ସେ ସବୁ ମୋତେ କହିଲେ,' ସେ
ନାରୀର ମୁଖରୁ ଏ କଥା ଶୁଣି ସେହି ଶମିରୋଣୀୟ ସହରର ଅନେକେ
୪୦ ତାଙ୍କୁ ବିଶ୍ୱାସ କଲେ । ସେହି ଶମିରୋଣୀୟମାନେ ଯୀଶୁଙ୍କ ନିକଟକୁ
ଆସି ତାଙ୍କୁ ସେମାନଙ୍କ ସହିତ ରହିବାପାଇଁ ଅନୁରୋଧ କଲେ; ସେ
ସେଠାରେ ଦୁଇ ଦିନ ରହିଲେ ।

୪୧,୪୨ ତାହାଙ୍କ ବାର୍ତ୍ତା ଶୁଣି ଅନେକେ ତାଙ୍କୁ ବିଶ୍ୱାସ କଲେ । ତା'ପରେ
ସେମାନେ ସେହି ନାରୀକୁ କହିଲେ, "ତୁମେ ଯେଉଁ କଥା କହିଲ,
କେବଳ ସେଥିଯୋଗୁଁ ନୁହେଁ, କିନ୍ତୁ ଆମେ ନିଜେ ତାଙ୍କ କଥା ଶୁଣି
ବିଶ୍ୱାସ କରୁଛୁ ଯେ, ଏ ପ୍ରକୃତରେ ଜଗତର ତ୍ରାଣକର୍ତ୍ତା।"

**ଯୀଶୁ ଜଣେ ରାଜକର୍ମଚାରୀର ପୁତ୍ରକୁ ସୁସ୍ଥ କଲେ :**

୪୩ ସେଠାରେ ଦୁଇଦିନ ରହିଲାପରେ ସେ ଗାଲିଲୀ ଅଭିମୁଖେ ଯାତ୍ରା
୪୪ କଲେ । କାରଣ ଯୀଶୁ ନିଜେ କହିଥିଲେ, 'ପ୍ରବକ୍ତା ସ୍ୱଦେଶରେ ମର୍ଯ୍ୟାଦା

୪୫ ପାଏ ନାହିଁ ।" ଗାଲିଲୀରେ ଯୀଶୁଙ୍କ ପହଞ୍ଚିବାପରେ ଗାଲିଲୀୟମାନେ ତାଙ୍କୁ
ସ୍ୱାଗତ କଲେ, କାରଣ ସେମାନେ ନିସ୍ତାରପର୍ବ ବେଳେ ଯିରୂଶାଲମରେ
ଥିବା ସମୟରେ ତାଙ୍କ କୃତ ଅନେକ ଅଲୌକିକ କାର୍ଯ୍ୟ ଦେଖିଥିଲେ ।

୪୬ ଗାଲିଲୀର ଯେଉଁ କାନ୍ନା ନଗରରେ ସେ ଜଳକୁ ଦ୍ରାକ୍ଷାରସରେ
ପରିଣତ କରିଥିଲେ ସେଠାରେ ଉପସ୍ଥିତ ହେଲେ । ସେଠାରେ ଥିବା
୪୭ ଜଣେ ରାଜକର୍ମଚାରୀଙ୍କ ପୁତ୍ର କଫର୍ନାହୂମରେ ପୀଡ଼ିତ ଥିଲା । ଯୀଶୁ ଯିହୁଦା
ପ୍ରଦେଶରୁ ଗାଲିଲୀକୁ ଆସିଛନ୍ତି ଶୁଣି ସେ ତାଙ୍କ ନିକଟକୁ ଆସି ତାଙ୍କ
ମୃତପ୍ରାୟ ପୁତ୍ରକୁ ସୁସ୍ଥ କରିବାକୁ ଯିବାପାଇଁ ଯୀଶୁଙ୍କୁ ନିବେଦନ କଲେ ।
୪୮ ଯୀଶୁ ପଚାରିଲେ, "ଚିହ୍ନ ଓ ଅଲୌକିକ କାର୍ଯ୍ୟ ନ ଦେଖିଲେ ତୁମେ
୪୯ କ'ଣ ମୋତେ ବିଶ୍ୱାସ କରିବ ନାହିଁ ?" ରାଜକର୍ମଚାରୀ ଅନୁନୟ କରି
୫୦ କହିଲେ, "ଆଜ୍ଞା, ମୋ' ପିଲାଟି ମରିବା ପୂର୍ବରୁ ଆସନ୍ତୁ ।" ଯୀଶୁ
କହିଲେ "ଯାଅ, ତୁମର ପୁଅ ବଞ୍ଚିବ ।" ସେହି ବ୍ୟକ୍ତି ଯୀଶୁଙ୍କ କଥା
୫୧ ବିଶ୍ୱାସ କରି ନିଜ ବାଟରେ ଫେରିଗଲେ । ସେ ଘରକୁ ଫେରିବା ବାଟରେ
୫୨ ଭୃତ୍ୟମାନେ ଭେଟି ତାଙ୍କୁ ପୁଅର ଆରୋଗ୍ୟ ବାର୍ତ୍ତା ଦେଲେ । ପିଲାଟି
କେଉଁ ସମୟରୁ ସୁସ୍ଥତା ଅନୁଭବ କଲା ବୋଲି ସେ ପଚାରିବାରୁ
ସେମାନେ କହିଲେ, "ଗତକାଲି ଅପରାହ୍ଣ ପ୍ରାୟ ଗୋଟାଏ ବେଳେ
୫୩ ତା'ର ଜ୍ୱର ଛାଡ଼ିଗଲା ।" ପିତା ବୁଝିଲେ ଯେ, ଯୀଶୁ ଯେଉଁ ମୁହୂର୍ତ୍ତରେ
'ତୁମର ପୁଅ ବଞ୍ଚିବ' ବୋଲି କହିଥିଲେ, ସେହି ମୁହୂର୍ତ୍ତରେ ଏହା
ଘଟିଥିଲା । ସେ ଓ ତାଙ୍କ ପରିବାରବର୍ଗ ଯୀଶୁଙ୍କୁ ବିଶ୍ୱାସ କଲେ ।

୫୪ ଯିହୁଦା ପ୍ରଦେଶରୁ ଗାଲିଲୀକୁ ଆସିବା ପରେ ଏହା ହେଲା
ଯୀଶୁଙ୍କର ଦ୍ୱିତୀୟ ଅଲୌକିକ କାର୍ଯ୍ୟ ।

## ପୁଷ୍କରିଣୀ ତଟରେ ସୁସ୍ଥତା :

୫ ଏହାପରେ ଯିହୁଦୀମାନଙ୍କର କୌଣସି ଏକ ପର୍ବ ପଡ଼ିବାରୁ ଯୀଶୁ
୨ ଯିରୂଶାଲମକୁ ଗଲେ । ଯିରୂଶାଲମ ନଗରସ୍ଥ ମେଷଦ୍ୱାର ନିକଟରେ
ଏବ୍ରୀ ଭାଷାରେ ବେଥେସଦା ବୋଲି ପାଉଥିବା ଏକ ପୁଷ୍କରିଣୀ ଥିଲା ।
୩ ତାର ପାଞ୍ଚଟି ମଣ୍ଡପ । ଏହି ମଣ୍ଡପଗୁଡ଼ିକରେ ବହୁ ରୋଗୀ, ଅନ୍ଧ, ଖଞ୍ଜ
୪ ଏବଂ ପକ୍ଷାଘାତୀ ସୁସ୍ଥ ହେବା ଆଶାରେ ପଡ଼ି ରହୁଥିଲେ । (କାରଣ
ଜଣେ ସ୍ୱର୍ଗଦୂତ ସମୟେ ସମୟେ ଆସି ପୁଷ୍କରିଣୀ ଜଳକୁ ଚହଲାଇଲା
ପରେ ଯେଉଁ ରୋଗୀ ପ୍ରଥମେ ଜଳ ଭିତରକୁ ଯାଉଥିଲା, ସେ ଯେ
୫ କୌଣସି ରୋଗରେ ଆକ୍ରାନ୍ତ ହେଲେ ମଧ୍ୟ ସୁସ୍ଥ ହେଉଥିଲା ।) ଅଠତିରିଶ
୬ ବର୍ଷ ହେଲା ରୋଗାକ୍ରାନ୍ତ ଜଣେ ରୋଗୀ ସେଠାରେ ଥିଲା । ଯୀଶୁ ତାକୁ
ସେଠାରେ ପଡ଼ିଥିବା ଦେଖିଲେ ଏବଂ ସେ ବହୁ ଦିନରୁ ପୀଡ଼ିତ ଥିବାର
୭ ଜାଣିପାରି ପଚାରିଲେ, "ତୁମେ କ'ଣ ସୁସ୍ଥ ହେବାକୁ ଚାହଁ ।" ସେହି
ରୋଗୀ କହିଲା, "ଆଜ୍ଞା ! ପାଣି ଚହଲିଲାବେଳେ ପୁଷ୍କରିଣୀକୁ ନେବା
ପାଇଁ ମୋର କେହି ନାହିଁ । ମୁଁ ଯିବାପାଇଁ ଚେଷ୍ଟା କରୁ କରୁ କେହି
୮ ନା କେହି ମୋ ପୂର୍ବରୁ ପାଣିକୁ ଚାଲିଯାଏ ।" ଯୀଶୁ ତାକୁ କହିଲେ,
"ଉଠି ଠିଆ ହୁଅ, ତୁମର ବିଛଣା ଧରି ଚାଲ ।"

୯ ତତକ୍ଷଣାତ ସେହି ଲୋକଟି ସୁସ୍ଥ ହେଲା ଏବଂ ବିଛଣା ଧରି ଚାଲିବାକୁ
ଲାଗିଲା । ସେ ଦିନ ବିଶ୍ରାମବାର ଥିଲା । ସେହି କାରଣରୁ ଯିହୁଦୀମାନେ
୧୦ ସୁସ୍ଥ ହୋଇଥିବା ବ୍ୟକ୍ତିକୁ କହିଲେ, "ବିଶ୍ରାମବାରରେ ବିଛଣା ନେଇ
୧୧ ଯିବା ନିୟମବିରୁଦ୍ଧ କାର୍ଯ୍ୟ ।" ସେ ଉତ୍ତର ଦେଲା, ଯେ ମୋତେ ସୁସ୍ଥ
୧୨ କଲେ, ସେ ମୋତେ ଏହା କରିବାକୁ କହିଲେ ।" ସେମାନେ ପଚାରିଲେ
୧୩ "ତୁମ ବିଛଣା ନେଇ ଚାଲ ବୋଲି କିଏ ତୁମକୁ କହିଲା ।" ସେହି ସୁସ୍ଥ
ହୋଇଥିବା ଲୋକଟି ଯୀଶୁଙ୍କୁ ଚିହ୍ନି ନ ଥିଲା । ଯୀଶୁ ଜନଗହଳି ଦେଇ
ଅଲକ୍ଷିତ ଭାବରେ ଚାଲି ଯାଇଥିଲେ ।

୧୪ ପରେ ମନ୍ଦିରରେ ଯୀଶୁ ସେହି ଲୋକର ଦେଖାପାଇ କହିଲେ,
"ତୁମେ ସୁସ୍ଥ ହୋଇଛ, ଆଉ ପାପ କରନାହିଁ, ନଚେତ୍ ତୁମ୍ଭପ୍ରତି
୧୫ ଏହାଠାରୁ ବଳି ଦୁର୍ଦ୍ଦଶା ଘଟିପାରେ ।" ସେହି ଲୋକଟି ଯିହୁଦୀ-
୧୬ ମାନଙ୍କୁ କହିଲା ଯେ, ଯୀଶୁ ତାକୁ ସୁସ୍ଥ କରିଛନ୍ତି । ଯୀଶୁ ବିଶ୍ରାମବାରର
ନିୟମ ଲଙ୍ଘନ କରୁଥିବାରୁ ଯିହୁଦୀମାନେ ତାଙ୍କୁ ତାଡ଼ନା କରିବାକୁ
ଲାଗିଲେ ।

୧୭ ମାତ୍ର ଯୀଶୁ କହିଲେ, "ମୋ ପିତା ଏ ପର୍ଯ୍ୟନ୍ତ କାର୍ଯ୍ୟ କରୁ-
୧୮ ଅଛନ୍ତି, ଆଉ ମୁଁ ମଧ୍ୟ କରୁଅଛି ।" କେବଳ ବିଶ୍ରାମବାର ବିଧି ଲଙ୍ଘନ-
କାରୀ ବୋଲି ନୁହେଁ, କିନ୍ତୁ ନିଜେ ଈଶ୍ବରଙ୍କୁ ନିଜ ପିତା ବୋଲି
ସମ୍ବୋଧନ କରି ନିଜକୁ ଈଶ୍ବରଙ୍କ ସମକକ୍ଷ କରିଥିବା ହେତୁ ଯୀଶୁଙ୍କୁ
ହତ୍ୟା କରିବା ପାଇଁ ଯିହୁଦୀମାନେ ଅଧିକ ବ୍ୟଗ୍ର ହୋଇ ଉଠିଲେ ।

**ପୁତ୍ରଙ୍କର କ୍ଷମତା :**

୧୯ ଯୀଶୁ ସେମାନଙ୍କୁ କହିଲେ, "ସତ୍ୟକରି ତୁମ୍ଭମାନଙ୍କୁ କହୁଛି,
ପୁତ୍ର ନିଜେ କିଛି କରିପାରନ୍ତି ନାହିଁ । ପିତାଙ୍କୁ ଯାହା କରିବାର ଦେଖନ୍ତି
୨୦ ତାହାହିଁ ସେ କରନ୍ତି । ପିତା ଯାହା କରନ୍ତି, ପୁତ୍ର ତାହା କରନ୍ତି
କାରଣ ପିତା ପୁତ୍ରଙ୍କୁ ସ୍ନେହ କରି ନିଜର ସମସ୍ତ କର୍ମ ତାହାଙ୍କୁ ଦେଖାନ୍ତି,
ତୁମେ ଯେପରି ଚମତ୍କୃତ ହୁଅ, ଏଥିପାଇଁ ସେ ଏହାଠାରୁ ଆହୁରି ମହତ୍ତର
୨୧ କର୍ମ ତାଙ୍କୁ ଦେଖାଇବେ । ପିତା ଯେପରି ମୃତ୍ୟୁରୁ ଉଠାଇ ଜୀବନ ଦାନ
କରନ୍ତି, ସେହିପରି ପୁତ୍ର ଯାହାକୁ ଚାହାନ୍ତି ତାହାକୁ ଜୀବନ ଦାନ
୨୨ କରନ୍ତି । ପିତା କାହାର ବିଚାର କରନ୍ତି ନାହିଁ, ସମସ୍ତ ବିଚାରଭାର ସେ
୨୩ ପୁତ୍ରଙ୍କ ଉପରେ ନ୍ୟସ୍ତ କରିଛନ୍ତି । ଏହା ଫଳରେ ସମସ୍ତେ ପିତାଙ୍କୁ
ସମ୍ମାନିତ କରିବା ପରି ପୁତ୍ରଙ୍କୁ ମଧ୍ୟ ସମ୍ମାନିତ କରିବେ । ଯେ ପୁତ୍ରଙ୍କୁ
ଅସମ୍ମାନ କରେ, ସେ ତାଙ୍କର ପ୍ରେରଣକର୍ତ୍ତା ପିତାଙ୍କୁ ମଧ୍ୟ ଅସମ୍ମାନ
କରେ ।

୨୪ 'ମୁଁ ଦୃଢ଼ତାର ସହ ଏହା କହିବାକୁ ଚାହେଁ, ଯେ ମୋର କଥା
ଶୁଣି ମୋର ପ୍ରେରଣକର୍ତ୍ତା ଈଶ୍ୱରଙ୍କଠାରେ ବିଶ୍ୱାସ କରେ, ସେ ଅନନ୍ତ
ଜୀବନ ପାଇଛି, ସେ ଦଣ୍ଡିତ ହେବ ନାହିଁ, ସେ ମୃତ୍ୟୁକୁ ଅତିକ୍ରମ କରି
୨୫ ଜୀବନରେ ପ୍ରବେଶ କରି ସାରିଛି । ମୃତମାନେ ଈଶ୍ୱରଙ୍କ ପୁତ୍ରଙ୍କର ସ୍ୱର
ଶୁଣିବେ, ଏବଂ ଯେଉଁମାନେ ଶୁଣି ପାରିବେ ସେମାନେ ଜୀବିତ ହେବେ,
ଏପରି ଦିନ ଆସୁଛି । ପ୍ରକୃତରେ କହିବାକୁ ଗଲେ, ସେହି
ସମୟ ବର୍ତ୍ତମାନ ଉପଗତ, ଏକଥା ମୁଁ ଦୃଢଭାବେ ପ୍ରକାଶ କରୁଛି ।
୨୬ ପିତା ଯେପରି ଜୀବନର ଉତ୍ସ, ସେହିପରି ସେ ପୁତ୍ରଙ୍କୁ ମଧ୍ୟ ଜୀବନର ଉତ୍ସ
୨୭ କରିଛନ୍ତି ଏବଂ ମନୁଷ୍ୟଜାତିର ବିଚାର ଅଧିକାର ତାଙ୍କୁ ଦେଇଛନ୍ତି,
୨୮ କାରଣ ସେ ମନୁଷ୍ୟପୁତ୍ର । ଏ କଥାରେ ଚମତ୍କୃତ ହୁଅ ନାହିଁ । ଯେଉଁ-
୨୯ ବେଳେ ସମାଧିସ୍ଥ ମୃତ ବ୍ୟକ୍ତିମାନେ ତାଙ୍କ ସ୍ୱର ଶୁଣିବେ ଏବଂ ସତ୍-
କର୍ମକାରୀମାନେ ଅନନ୍ତଜୀବନ ପାଇଁ, ଦୁଷ୍କର୍ମକାରୀମାନେ ଦଣ୍ଡ
ପାଇବା ପାଇଁ ମୃତ୍ୟୁରୁ ପୁନରୁତ୍ଥିତ ହୋଇ ଉଠିବେ, ଏପରି ଦିନ
ଆସୁଛି ।

୩୦ ମୁଁ ନିଜେ କିଛି କରେ ନାହିଁ, ମୁଁ ପିତାଙ୍କ ନିର୍ଦ୍ଦେଶ ଅନୁଯାୟୀ
ବିଚାର କରେ ଏବଂ ମୋର ବିଚାର ଯଥାର୍ଥ. କାରଣ ମୁଁ ନିଜ
ଇଚ୍ଛାନୁଯାୟୀ ନ କରି ମୋ' ପ୍ରେରଣକର୍ତ୍ତାଙ୍କ ଇଚ୍ଛା ପାଳନ
କରେ ।

୩୧ ଯଦି ମୁଁ ନିଜ ବିଷୟରେ ସାକ୍ଷ୍ୟ ଦିଏ, ମୋ ସାକ୍ଷ୍ୟ ସତ୍ୟ ନୁହେଁ ।
୩୨ ମୋ ବିଷୟରେ ଅନ୍ୟ ଜଣେ ବ୍ୟକ୍ତି ସାକ୍ଷୀ ଦିଅନ୍ତି, ମୋ ବିଷୟରେ
୩୩ ତାଙ୍କର ସାକ୍ଷ୍ୟ ଯେ ସତ୍ୟ, ଏହା ମୁଁ ଜାଣେ । ତୁମେ ଯୋହନଙ୍କଠାରୁ
୩୪ ସତ୍ୟ ପକ୍ଷରେ ସାକ୍ଷ୍ୟ ଲୋକ ପଠାଇ ସଂଗ୍ରହ କରିଅଛ । ମୁଁ ମନୁଷ୍ୟଠାରୁ
ସାକ୍ଷ୍ୟ ଗ୍ରହଣ କରେ ନାହିଁ, ବରଂ ତୁମେ ଯେପରି ପରିତ୍ରାଣ ପାଅ,
୩୫ ସେଥିପାଇଁ ଏସବୁ କଥା କହୁଅଛି । ଯୋହନ ଜ୍ୱଳନ୍ତ ଓ ତେଜୋମୟ

ପ୍ରଦୀପ ଥିଲେ; ତୁମେ କିଛି ସମୟ ପାଇଁ ତାଙ୍କର ଜ୍ୟୋତିଃରେ ଉଲ୍ଲସିତ
୩୬ ହେବାକୁ ଇଚ୍ଛା ପ୍ରକାଶ କଲ । କିନ୍ତୁ ଯୋହନଙ୍କ ସାକ୍ଷ୍ୟ ଅପେକ୍ଷା
ମୋର ଗୋଟିଏ ଅଧିକ ଗୁରୁତ୍ୱପୂର୍ଣ୍ଣ ସାକ୍ଷ୍ୟ ଅଛି । ମୁଁ ଯେଉଁ ସମସ୍ତ
କାର୍ଯ୍ୟ କରୁଅଛି, ଯାହାସବୁ ସମ୍ପନ୍ନ କରିବା ଦାୟିତ୍ୱ ପିତା ମୋଠାରେ
ନ୍ୟସ୍ତ କରିଛନ୍ତି ସେ ସବୁ ମୋର ସପକ୍ଷରେ ପ୍ରମାଣ ଦିଏ ଯେ, ମୁଁ
୩୭ ପିତାଙ୍କର ପ୍ରେରିତ । ମୋର ପ୍ରେରଣକର୍ତ୍ତା ପିତା ମୋ ବିଷୟରେ ସାକ୍ଷ୍ୟ
ଦେଇଛନ୍ତି । ତୁମେ ତାଙ୍କ ସ୍ୱର କେବେହେଁ ଶୁଣିନାହଁ କିମ୍ବା ତାଙ୍କର
୩୮ ଆକୃତି ଦେଖିନାହଁ । ତୁମେ ତାଙ୍କର ବାଣୀ ତୁମ ହୃଦୟରେ ରଖୁ-
ନାହଁ, କାରଣ ସେ ଯାହାକୁ ପ୍ରେରଣ କରିଛନ୍ତି ତାଙ୍କଠାରେ ତୁମେ
୩୯ ବିଶ୍ୱାସ କରନାହଁ । ତୁମେ ଧର୍ମଶାସ୍ତ୍ର ଅନୁସନ୍ଧାନ କରୁଅଛ, କାରଣ
ତାହା ତୁମକୁ ଅନନ୍ତ ଜୀବନ ଦେବ ବୋଲି ତୁମର ବିଶ୍ୱାସ । ସେହି
୪୦ ଧର୍ମଶାସ୍ତ୍ର ମୋ ବିଷୟରେ ପ୍ରମାଣ ଦେଉଅଛି । ତଥାପି ଅନନ୍ତଜୀବନ
ପାଇବା ପାଇଁ ତୁମେ ମୋ ନିକଟକୁ ଆସିବାକୁ ଅନିଚ୍ଛୁକ ।

୪୨,୪୧ ମୁଁ ମଣିଷଠାରୁ ଗୌରବ ଅପେକ୍ଷା କରେ ନାହିଁ, କାରଣ ମୁଁ
୪୩ ତୁମକୁ ଜାଣେ, ତୁମ ହୃଦୟରେ ଈଶ୍ୱରଙ୍କ ପ୍ରେମ ନାହିଁ । ମୁଁ ମୋର
ପିତାଙ୍କ କ୍ଷମତା ନେଇ ଆସିଛି, କିନ୍ତୁ ତୁମେ ମୋତେ ଗ୍ରହଣ କରୁନାହଁ,
ଅନ୍ୟ କେହି ବ୍ୟକ୍ତି ନିଜେ ନିଜର କ୍ଷମତା ନେଇ ଆସିଲେ ତୁମେ ତାକୁ
୪୪ ଗ୍ରହଣ କରିବ । ତୁମେ କିପରି ବିଶ୍ୱାସ କରିପାର ? ପରସ୍ପରଠାରୁ
ସମ୍ମାନ ପାଇବାକୁ ତୁମେ ଆଗ୍ରହୀ, କିନ୍ତୁ ଏକମାତ୍ର ଈଶ୍ୱରଙ୍କଠାରୁ
୪୫ ଯେଉଁ ଗୌରବ ଆସେ ତାହା ପାଇବା ପାଇଁ ଚେଷ୍ଟିତ ନୁହଁ । ପିତାଙ୍କ
ନିକଟରେ ମୁଁ ହିଁ ତୁମକୁ ଅଭିଯୁକ୍ତ କରିବି, ଏହା ଭାବ ନାହିଁ, ଯେଉଁ
ମୋଶାଙ୍କଠାରେ ତୁମେ ଭରସା ରଖିଛ, ସେ ତୁମ ବିରୁଦ୍ଧରେ ଅଭିଯୋଗ
୪୬ କରୁଛନ୍ତି । ତୁମେ ଯଦି ମୋଶାଙ୍କୁ ବିଶ୍ୱାସ କରନ୍ତ, ମୋତେ ବିଶ୍ୱାସ
କରନ୍ତ, କାରଣ ସେ ମୋ ବିଷୟରେ ଲେଖିଛନ୍ତି । କିନ୍ତୁ ତୁମେ ତାଙ୍କ
ଲେଖାରେ ବିଶ୍ୱାସ କରୁନାହଁ, ତେବେ କିପରି ମୋ ଉକ୍ତିରେ ବିଶ୍ୱାସ
କରିବ ?

## ଯୀଶୁ ପାଞ୍ଚ ହଜାର ଲୋକଙ୍କୁ ଭୋଜନ ଦେବା :

(ମାଥିଉ ୧୪ : ୧୩-୨୧ । ମାର୍କ ୬ : ୩୦-୩୪ । ଲୂକ ୯ : ୧୦ ୧୭
ମଧ୍ୟ ପାଠ କର ।।

୧ ଏହାପରେ ଯୀଶୁ ଗାଲିଲୀ ହ୍ରଦ (ବା ତିବେରିଆ ହ୍ରଦ)ର
୨ ଅପରପାର୍ଶ୍ୱକୁ ଗଲେ । ଯୀଶୁ ରୋଗୀ ସୁସ୍ଥ କରିବା ପାଇଁ ଯେଉଁ
ଅଲୌକିକ କାର୍ଯ୍ୟଗୁଡ଼ିକ କରୁଥିଲେ, ତାହା ଦେଖି ଏକ ବୃହତ ଜନତା
୩ ତାଙ୍କର ଅନୁସରଣ କଲେ । ଯୀଶୁ ଗୋଟିଏ ପାହାଡ ଉପରକୁ ଉଠି
୪ ଯାଇ ନିଜର ଶିଷ୍ୟମାନଙ୍କ ସହିତ ବସିଲେ । ସେତେବେଳେ ଯିହୁଦୀ-
୫ ମାନଙ୍କର ନିସ୍ତାରପର୍ବ ନିକଟବର୍ତ୍ତୀ ଥିଲା । ଯୀଶୁ ଗୋଟିଏ ବିରାଟ
ଜନତା ତାଙ୍କର ଆଡ଼କୁ ଅଗ୍ରସର ହେବା ଦେଖି ଫିଲିପ୍‌ପଙ୍କୁ କହିଲେ,
"ଏମାନଙ୍କୁ ଖୁଆଇବାକୁ କେଉଁଠାରୁ ରୋଟି କିଣିବା ?"
୬ ଯୀଶୁ ଏହା ଫିଲିପ୍‌ପଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ କହୁଥିଲେ
ବାସ୍ତବରେ ସେ କ'ଣ କରିବେ, ତାହା ସେ ଜାଣି ପାରୁଥିଲେ ।

୭ ଫିଲିପ ଉତ୍ତର ଦେଲେ, "ଏମାନଙ୍କ ମଧ୍ୟରୁ, ପ୍ରତ୍ୟେକେ ଅନ୍ତତଃ
କିଛି କିଛି ପାଇବା ଭଳି ରୋଟି କିଣିଲେ ୨୦୦ ଦେନାରୀ* ଦରକାର
୮ ପଡ଼ିବ ।" ଶିଷ୍ୟମାନଙ୍କ ମଧ୍ୟରେ ଆନ୍ଦ୍ରିୟ ଥିଲେ । ସେ ଶିମୋନ
୯ ପିତରଙ୍କର ଭାଇ; ସେ କହିଲେ, "ଏଠାରେ ଜଣେ ବାଳକ ଅଛି ।
ତା' ପାଖରେ ପାଞ୍ଚଟି ଯବରୋଟି ଓ ଦୁଇଟି ଛୋଟ ମାଛ ଅଛି ।
୧୦ ତେବେ ଏତେ ଲୋକଙ୍କ ପାଇଁ ତାହା କ'ଣ ହେବ ?" ଯୀଶୁ କହିଲେ,
"ଲୋକମାନଙ୍କୁ ବସାଅ । ସେଠାରେ ବହୁତ ଘାସ ଥିଲା । ଲୋକେ ବସି
ପଡ଼ିଲେ । ସେମାନଙ୍କ ମଧ୍ୟରୁ ପୁରୁଷମାନଙ୍କର ସଂଖ୍ୟା ପ୍ରାୟ
୧୧ ପାଞ୍ଚହଜାର ଥିଲା । ଯୀଶୁ ରୋଟି ନେଇ ଈଶ୍ୱରଙ୍କ ଧନ୍ୟବାଦ
କରି ସାରିବାପରେ ବସିଥିବା ଲୋକମାନଙ୍କୁ ପରିବେଷଣ କରିବାପାଇଁ

---

* ରୋମୀୟମାନଙ୍କର ଗୋଟିଏ ରୌପ୍ୟ ମୁଦ୍ରା । ଗୋଟିଏ ଦେନାରୀ ତତ୍କାଳୀନ ମଜୁରିଆର ଗୋଟିଏ ଦିନର ମଜୁରି ଥିଲା ।

ଶିଷ୍ୟମାନଙ୍କୁ ଦେଲେ । ତା' ପରେ ସେ ମାଛକୁ ମଧ୍ୟ ସେହିପରି
୧୨ କଲେ । ସେମାନେ ପରିତୃପ୍ତ ହେବାପରେ ଯୀଶୁ ଶିଷ୍ୟମାନଙ୍କୁ କହିଲେ,
"ଯେଉଁ ସବୁ ଭଙ୍ଗା ଖଣ୍ଡଗୁଡ଼ିକ ବଳିପଡ଼ିଛି ସେ ସବୁକୁ ସାଉଣ୍ଟି
ରଖ : କିଛି ନଷ୍ଟ ହେବାକୁ ଦିଅ ନାହିଁ ।" ସେମାନେ ସେ ସବୁକୁ
୧୩ ସଂଗ୍ରହ କରି ପକାଇଲେ ଏବଂ ସେହି ପାଞ୍ଚ ରୋଟି ଦୁଇ ମାଛ ଲୋକେ
ଭୋଜନ କରିବା ପରେ ଯେଉଁ ଭଙ୍ଗା ଖଣ୍ଡମାନ ବଳିପଡ଼ିଥିଲା ସେଥିରେ
ସେମାନେ ବାର ଟୋକେଇ ପୂର୍ଣ୍ଣ କରିଦେଲେ ।

୧୪ ପ୍ରଭୁ ଯୀଶୁଙ୍କର ଏହି ଅଲୌକିକ କାର୍ଯ୍ୟ ଦେଖି ଲୋକମାନେ
କହିଲେ, "ଯେଉଁ ପ୍ରବକ୍ତାଙ୍କର ଆଗମନ ହେବାର ଥିଲା ଏ ଠିକ୍ ସେହି
୧୫ ବ୍ୟକ୍ତି ।" ଯୀଶୁ ଜାଣି ପାରିଲେ ଯେ, ଲୋକେ ତାଙ୍କୁ ବଳାତ୍କାର କରି
ରାଜା କରିବା ଉଦ୍ଦେଶ୍ୟରେ ଧରିନେବାକୁ ଆସୁଛନ୍ତି । ତେଣୁ ସେ
ସେମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଏକାକୀ ପାହାଡ଼କୁ ଚାଲିଗଲେ ।

## ଜଳ ଉପରେ ଯୀଶୁଙ୍କର ଗମନ :

(ମାଥିଉ ୧୪ : ୨୨-୩୩ । ମାର୍କ ୬ : ୪୫-୫୨ ମଧ୍ୟ ପାଠ କର ।)

୧୬ ଯେତେବେଳେ ସନ୍ଧ୍ୟା ହେଲା, ଶିଷ୍ୟମାନେ ହ୍ରଦକୁ ଗଲେ ।
୧୭ ସେମାନେ କଫର୍ନାହୂମକୁ ଫେରିବା ଉଦ୍ଦେଶ୍ୟରେ ଡଙ୍ଗାରେ ଚଢ଼ିଲେ ।
ସେତେବେଳେ ଅନ୍ଧକାର ଘୋଟି ଯାଇଥିଲା, ଏଣେ ଯୀଶୁ ସେମାନଙ୍କର
୧୮ ନିକଟକୁ ଆସି ନ ଥାନ୍ତି । ପ୍ରବଳ ବାୟୁ ବହୁଥିବାରୁ ହ୍ରଦରେ ଢେଉ
୧୯ ଉଠୁଥିଲା । ଶିଷ୍ୟମାନେ ପ୍ରାୟ ତିନି ଚାରି କିଲୋମିଟର ବାହିଲାପରେ
ସେମାନେ ଦେଖିଲେ, ଯୀଶୁ ଜଳ ଉପରେ ଚାଲି ଚାଲି ଡଙ୍ଗା ଆଡ଼କୁ
୨୦ ଆସୁଛନ୍ତି । ସେମାନେ ଭୟଗ୍ରସ୍ତ ହେଲେ; ଯୀଶୁ କହିଲେ, "ଭୟ
୨୧ କରନାହିଁ, "ମୁଁ ଅଛି ପରା ।" ସେମାନେ ତାଙ୍କୁ ଡଙ୍ଗାଭିତରକୁ
ନେବାକୁ ଚାହୁଁଥିଲେ, କିନ୍ତୁ ହଠାତ୍ ସେମାନଙ୍କ ଗନ୍ତବ୍ୟ ସ୍ଥାନରେ
ଡଙ୍ଗା ଆସି ପହଞ୍ଚିଗଲା ।

## ଲୋକମାନେ ଯୀଶୁଙ୍କୁ ଖୋଜନ୍ତି :

୨୨ ପରଦିନ ହ୍ରଦ ଅପରପାରିରେ ଜନତା ସେହିପରି ଠିଆ ହୋଇ
ରହିଥାନ୍ତି । ସେଠାରେ ଗୋଟିଏ ମାତ୍ର ଡଙ୍ଗା ଥିବାର ସେମାନେ
ଦେଖିଥିଲେ । ସେମାନେ ଜାଣିଥିଲେ, ସେଥିରେ କେବଳ ଯୀଶୁଙ୍କର
ଶିଷ୍ୟମାନେ ଯାଇଥିଲେ ଓ ଯୀଶୁ ସେମାନଙ୍କର ସଙ୍ଗରେ ନ ଥିଲେ ।
୨୩ ଏତିକିବେଳେ ତିବିରିଆରୁ କେତେକ ଡଙ୍ଗା ସେଠାରେ ପହଞ୍ଚିଲା ।
ଯେଉଁ ସ୍ଥାନରେ ଯୀଶୁ ରୋଟି ନେଇ ଈଶ୍ୱରଙ୍କର ଧନ୍ୟବାଦ କରିବା
ପରେ ଲୋକମାନେ ତାହା ଭୋଜନ କରିଥିଲେ, ତାର ନିକଟରେ ସେ
୨୪ ସବୁ ଡଙ୍ଗା ପହଞ୍ଚିଲା । ଯେତେବେଳେ ଜନତା ଦେଖିଲେ ଯେ, ଯୀଶୁ
ଓ ତାଙ୍କର ଶିଷ୍ୟମାନେ ଆଉ ସେଠାରେ ନାହାନ୍ତି, ସେମାନେ
ଯୀଶୁଙ୍କୁ ଖୋଜିବା ପାଇଁ ସେ ଡଙ୍ଗାଗୁଡ଼ିକରେ କଫର୍ନାହୂମକୁ
ବାହାରିଲେ ।

## ଯୀଶୁ ଜୀବନଦାୟକ ରୋଟି :

୨୫ ହ୍ରଦର ଆରପାରିରେ ଯୀଶୁଙ୍କୁ ଦେଖି ସେମାନେ ପଚାରିଲେ,
୨୬ "ଗୁରୁ, ଆପଣ ଏଠାକୁ କେତେବେଳେ ଆସିଲେ ?" ଯୀଶୁ ଉତ୍ତର
ଦେଲେ, "ମୁଁ ତୁମକୁ ସତ୍ୟ କହୁଛି, ତୁମେ ମୋର ଅଲୌକିକ କାର୍ଯ୍ୟର
ତାତ୍ପର୍ଯ୍ୟ ବୁଝିଥିବାରୁ ମୋତେ ଖୋଜୁନାହଁ, ସେହି ରୋଟି ଖାଇ ପରିତୃପ୍ତ
୨୭ ହୋଇ ଥିବାରୁ ଖୋଜୁଛ ? ଯେଉଁ ଖାଦ୍ୟ ପଚିସଢ଼ି ଯାଏ, ତାର ପାଇଁ
ଶ୍ରମ କରନାହିଁ, ଯେଉଁ ଖାଦ୍ୟ ନଷ୍ଟ ହୋଇଯାଏ ନାହିଁ, ସେହି ଅନନ୍ତ-
ଜୀବନ ସ୍ୱରୂପ ଖାଦ୍ୟ ପାଇଁ ଶ୍ରମ କର । ମନୁଷ୍ୟପୁତ୍ର ତୁମକୁ ସେହି ଖାଦ୍ୟ
ଦେବେ, କାରଣ ତାହାଙ୍କ ଉପରେ ସ୍ୱର୍ଗସ୍ଥ ପିତା ନିଜର କ୍ଷମତା
୨୮ ମୁଦ୍ରାଙ୍କିତ କରିଛନ୍ତି ।" ସେମାନେ ପ୍ରଶ୍ନ କଲେ, "ଆମେ କଅଣ କଲେ
୨୯ ଈଶ୍ୱରଙ୍କର କର୍ମଗୁଡ଼ିକୁ ସାଧନ କରିବା ?" ଯୀଶୁ ଉତ୍ତର ଦେଲେ,
"ଈଶ୍ୱର ତୁମକୁ ଏହି କାର୍ଯ୍ୟ କରିବାକୁ ଚାହାନ୍ତି, ସେ ଯାହାଙ୍କୁ

୩୦ ପ୍ରେରଣ କରିଛନ୍ତି ତାହାଙ୍କଠାରେ ବିଶ୍ୱାସ କର ।" ସେମାନେ ପ୍ରଶ୍ନ
କଲେ, "ଆପଣ କେଉଁ ଶକ୍ତିର ଚିହ୍ନଗୁଡ଼ିକ ଦେଖାଉଛନ୍ତି, ଯାହା ଦେଖି
ଆମେ ଆପଣଙ୍କଠାରେ ବିଶ୍ୱାସ କରିବା ? ଆପଣ କଅଣ ସାଧନ କରନ୍ତି ?
୩୧ ଆମର ପିତୃଲୋକେ ପ୍ରାନ୍ତରରେ ମାନ୍ନା ଭୋଜନ କରିଥିଲେ । ଏ ସମ୍ପର୍କରେ
ଶାସ୍ତ୍ରରେ ଲେଖାଅଛି, ସେ ସେମାନଙ୍କୁ ଭୋଜନ କରିବା ନିମନ୍ତେ ସ୍ୱର୍ଗରୁ
୩୨ ରୋଟି ଦେଲେ ।" ଯୀଶୁ କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି,
ମୋଶା ତୁମ୍ଭମାନଙ୍କୁ ଯାହା ଦେଲେ ତାହା ସ୍ୱର୍ଗରୁ ରୋଟି ନୁହେଁ, ମୋର
୩୩ ପିତା ତୁମ୍ଭମାନଙ୍କୁ ପ୍ରକୃତ ସ୍ୱର୍ଗୀୟ ରୋଟି ଦେଉଛନ୍ତି । ଯେଉଁ ବ୍ୟକ୍ତି
ସ୍ୱର୍ଗରୁ ଅବତରଣ କରି ଜଗତକୁ ଜୀବନ ଦାନ କରନ୍ତି ସେ ହିଁ
ଈଶ୍ୱରଙ୍କର ରୋଟି ।"
୩୪ ସେମାନେ ତାଙ୍କୁ କହିଲେ, "ପ୍ରଭୋ ! ଆମକୁ ସର୍ବଦା ସେହି
୩୫ ରୋଟି ଦିଅନ୍ତୁ ।" ଯୀଶୁ ସେମାନଙ୍କୁ କହିଲେ, "ମୁଁ ନିଜେ ସେହି ଜୀବନ-
ସ୍ୱରୂପ ରୋଟି । ଯେଉଁ ବ୍ୟକ୍ତି ମୋ ନିକଟକୁ ଆସେ ସେ କେବେ
ହେଲେ କ୍ଷୁଧିତ ହେବ ନାହିଁ, ଯେଉଁ ବ୍ୟକ୍ତି ମୋଠାରେ ବିଶ୍ୱାସ କରେ,
୩୬ ସେ କେବେ ହେଲେ ତୃଷିତ ହେବ ନାହିଁ । କିନ୍ତୁ ମୁଁ ତୁମକୁ କହୁଛି,
ତୁମେମାନେ ମୋର ଦର୍ଶନ ପାଇ ସୁଦ୍ଧା ତୁମର ବିଶ୍ୱାସ ହେଉନାହିଁ ।
୩୭ ପିତା ମୋତେ ଯାହାକୁ ଦେବେ ସେ ମୋ ନିକଟକୁ ଆସେ । ଯେଉଁ
ବ୍ୟକ୍ତି ମୋ ନିକଟକୁ ଆସେ, ତାକୁ ମୁଁ କେବେ ହେଲେ ଦୂର କରି
୩୮ ଦେବ ନାହିଁ । କାରଣ ମୁଁ ମୋର ଇଚ୍ଛା ସାଧନ କରିବାକୁ ନୁହେଁ,
ଯେ ମୋତେ ପ୍ରେରଣ କରିଛନ୍ତି ତାଙ୍କର ଇଚ୍ଛା ସାଧନ
୩୯ କରିବାକୁ ସ୍ୱର୍ଗରୁ ଅବତରଣ କରିଛି । ମୋର ପ୍ରେରଣକର୍ତ୍ତାଙ୍କର ଏହି
ଇଚ୍ଛା ; ସେ ଯେଉଁମାନଙ୍କୁ ଦେଇଛନ୍ତି ସେମାନଙ୍କର ମଧ୍ୟରୁ ଜଣକୁ
ସୁଦ୍ଧା ନ ହରାଇ ଶେଷ ଦିନରେ ସେମାନଙ୍କୁ ସମସ୍ତଙ୍କୁ
୪୦ ମୋତେ ବଞ୍ଚାଇ ଉଠାଇବାକୁ ହେବ । ମୋର ପିତାଙ୍କର ଏହି ଇଚ୍ଛା,
ଯେଉଁମାନେ ସମସ୍ତେ ପୁତ୍ରଙ୍କୁ ଦର୍ଶନ କରି ତାହାଙ୍କଠାରେ ବିଶ୍ୱାସ
କରିବେ, ସେମାନେ ସମସ୍ତେ ଅନନ୍ତଜୀବନ ପ୍ରାପ୍ତ ହେବେ ; ମୁଁ ଶେଷ
ଦିନ ସେମାନଙ୍କୁ ବଞ୍ଚାଇ ଉଠାଇବି ।"

୪୧ ମୁଁ ସ୍ୱର୍ଗରୁ ଅବତରଣ କରିଥିବା ରୋଟି ବୋଲି ଯୀଶୁ କହିବାରୁ
ଯିହୁଦୀମାନଙ୍କ ମଧ୍ୟରେ ତାଙ୍କ ସମ୍ପର୍କରେ ଆଲୋଚନା ସମାଲୋଚନା
୪୨ ଚାଲିଲା । ସେମାନେ କହିଲେ, "ଏ ଯୋସେଫଙ୍କର ପୁତ୍ର ଯୀଶୁ ନୁହେଁ
କି ? ଆମେ କଅଣ ଏହାର ପିତାମାତାଙ୍କୁ ଜାଣିନାହୁଁ ? ତେବେ
ଏ ବର୍ତ୍ତମାନ କିପରି କହେ, ମୁଁ ସ୍ୱର୍ଗରୁ ଅବତରଣ କରିଛି ?"
୪୩ ଯୀଶୁ ଉତ୍ତର ଦେଲେ, "ଆପଣମାନଙ୍କ ମଧ୍ୟରେ ଏଧରି ଆଲୋଚନା
୪୪ ସମାଲୋଚନା ନ ହେଉ । ଯେଉଁ ପିତା ମୋତେ ପ୍ରେରଣ କରିଛନ୍ତି
ସେ ମୋ ନିକଟକୁ ନ ଟାଣିଲେ କେହି ମୋ ନିକଟକୁ ଆସି ପାରିବ
ନାହିଁ ; ଏଧରି ବ୍ୟକ୍ତିମାନଙ୍କୁ ମୁଁ ଶେଷ ଦିନରେ ବଞ୍ଚାଇ
୪୫ ଉଠାଇବି । ପ୍ରବକ୍ତାମାନଙ୍କ ଗ୍ରନ୍ଥରେ ଲେଖା ଅଛି, 'ସମସ୍ତେ ଈଶ୍ୱରଙ୍କ
ଦ୍ୱାରା ଶିକ୍ଷା ପାଇବେ ।' ଯେଉଁ ବ୍ୟକ୍ତି ପିତାଙ୍କ ରବ ଶୁଣେ ଓ ତାଙ୍କଠାରୁ
୪୬ ଶିକ୍ଷା ପାଏ, ସେ ମୋ ନିକଟକୁ ଆସେ । ଏହାର ଭାବ ନୁହେଁ ଯେ,
ପ୍ରତ୍ୟେକ ବ୍ୟକ୍ତି ପିତାଙ୍କର ଦର୍ଶନ ପାଇଛି, ଯେ ଈଶ୍ୱରଙ୍କଠାରୁ ଆଗତ
୪୭ ସେ କେବଳ ପିତାଙ୍କର ଦର୍ଶନ ପାଇଛନ୍ତି । ମୁଁ ତୁମମାନଙ୍କୁ ସତ୍ୟ
୪୮ କହୁଛି, ଯେ ବିଶ୍ୱାସ କରେ ସେ ଅନନ୍ତଜୀବନ ପାଇଛି । ମୁଁ
୪୯ ଜୀବନପ୍ରଦ ରୋଟି । ତୁମମାନଙ୍କର ପିତୃଲୋକେ ପ୍ରାନ୍ତରରେ ଥିବାବେଳେ
୫୦ ମାନ୍ନା ଭୋଜନ କଲେ, କିନ୍ତୁ ମୃତ୍ୟୁ ଭୋଗ କଲେ । କିନ୍ତୁ ଯେଉଁ ରୋଟି
ସ୍ୱର୍ଗରୁ ଅବତରଣ କରେ, ତାକୁ ଯେ ଭୋଜନ କରେ ସେ ମୃତ୍ୟୁଭୋଗ
୫୧ କରିବ ନାହିଁ । ମୁଁ ସ୍ୱର୍ଗରୁ ଅବତରଣ କରିଥିବା ଜୀବନ୍ତ ରୋଟି, ଏହି
ରୋଟିକୁ ଯେ ଭୋଜନ କରେ, ସେ ଚିରକାଳ ବଞ୍ଚି ରହିବ । ମୁଁ ଯେଉଁ
ରୋଟି ଦେବି ତାହା ମୋର ମାଂସ । ମୁଁ ତାକୁ ଏହି ଜଗତର ଜୀବନ
ନିମନ୍ତେ ଉତ୍ସର୍ଗ କରୁଅଛି ।"

୫୨ ଏହାର ଫଳରେ ଯିହୁଦୀମାନଙ୍କ ମଧ୍ୟରେ ଭୀଷଣ ବାଗ୍‌ଯୁଦ୍ଧ ଚାଲିଲା
ସେମାନେ ପଚାରିଲେ, "ସେ କିପରି ଆମକୁ ନିଜର ମାଂସ ଭୋଜନ

୫୩ କରିବାକୁ ଦେଇ ପାରିବ ?" ଯୀଶୁ କହିଲେ, "ମୁଁ ତୁମମାନଙ୍କୁ ସତ୍ୟ
କହୁଛି, ତୁମେ ମନୁଷ୍ୟପୁତ୍ରଙ୍କର ମାଂସ ଭୋଜନ ନ କଲେ, ତାଙ୍କର
ରକ୍ତ ପାନ ନ କଲେ ତୁମେ ଅନ୍ତରରେ ଜୀବନ ପ୍ରାପ୍ତ ହେବ
୫୪ ନାହିଁ । ଯେ ମୋର ମାଂସ ଭୋଜନ କରେ ଓ ମୋର ରକ୍ତ ପାନ କରେ,
ସେ ଅନନ୍ତ ଜୀବନ ପାଏ ମୁଁ ତାକୁ ଶେଷଦିନ ବଞ୍ଚାଇ ଉଠାଇବି ।
୫୫ କାରଣ ମୋର ମାଂସହିଁ ପ୍ରକୃତ ଖାଦ୍ୟ ଓ ମୋର ରକ୍ତ ପ୍ରକୃତ
୫୬ ପେୟ । ଯେଉଁ ବ୍ୟକ୍ତି ମୋର ମାଂସ ଭୋଜନ କରେ ଓ ମୋର ରକ୍ତ
୫୭ ପାନ କରେ ସେ ମୋଠାରେ ଥାଏ ଓ ମୁଁ ତାହାଠାରେ ଥାଏ । ଜୀବନ୍ତ
ପିତା ମୋତେ ପଠାଇଛନ୍ତି ଓ ମୁଁ ସେହି ପିତାଙ୍କ ହେତୁ ଜୀବିତ ।
ସେହିପରି ଯେଉଁ ବ୍ୟକ୍ତି ମୋତେ ଭୋଜନ କରେ ସେ ମୋର ହେତୁ
୫୮ ଜୀବିତ ରହିବ । ଏ ସେହି ସ୍ୱର୍ଗରୁ ଅବତରଣ କରିଥିବା ଆହାର ;
ତୁମର ପିତୃଲୋକେ ଯେଉଁ ଆହାର ଭୋଜନ କରି ମୃତ୍ୟୁଭୋଗ କରି-
ଥିଲେ, ତାହାପରି ଏହି ଆହାର ନୁହେଁ । ଯେଉଁ ବ୍ୟକ୍ତି ଏହି ଆହାର
୫୯ ଭୋଜନ କରେ ସେ ଚିରଦିନ ଜୀବିତ ରହିବ ।" ଯୀଶୁ କଫର୍ନାହୁମର
ସମାଜଗୃହରେ ଶିକ୍ଷା ଦେବା ବେଳେ ଏହା କହିଥିଲେ ।

**ଅନନ୍ତଜୀବନପ୍ରଦ ବାକ୍ୟ :**

୬୦ ଶିଷ୍ୟମାନଙ୍କ ମଧ୍ୟରୁ ଅନେକେ ଏହା ଶୁଣି କହିଲେ, "ଏ ଶିକ୍ଷା
୬୧ ଅତ୍ୟନ୍ତ କର୍କଶ, ଏହାକୁ କିଏ ଶୁଣି ପାରିବ ?" ଯୀଶୁ ଜାଣିଲେ ଯେ,
ତାଙ୍କର ଶିଷ୍ୟମାନେ ଏ ବିଷୟ ନେଇ ଆନ୍ଦୋଳନ କରୁଛନ୍ତି । ସେ
୬୨ ସେମାନଙ୍କୁ କହିଲେ, "ଏଥିରେ କଅଣ ତୁମେମାନେ ବାଧା ପାଉଛ ?
ଯଦି ତୁମେ ଦେଖ ଯେ, ମନୁଷ୍ୟପୁତ୍ର ପୂର୍ବେ ଯେଉଁଠାରେ ଥିଲେ ସେଠାକୁ
୬୩ ଆରୋହଣ କରୁଛନ୍ତି, ତା'ହେଲେ ଆଉ କଅଣ ନ ହେବ ? ଈଶ୍ୱରଙ୍କ
ଆତ୍ମା କେବଳ ଜୀବନ ଦାନ କରେ, ମନୁଷ୍ୟର ଶକ୍ତି କୌଣସି କାମରେ
ଆସେ ନାହିଁ । ମୋର ଯେଉଁ ଉକ୍ତିଗୁଡ଼ିକ ତୁମକୁ ପ୍ରଦାନ କରିଛି, ତାହା
୬୪ ଆତ୍ମା ଓ ଜୀବନ; ତଥାପି ତୁମ ମଧ୍ୟରୁ କେତେକ ବିଶ୍ୱାସ କରନ୍ତି ନାହିଁ ।"

କେଉଁମାନେ ତାଙ୍କଠାରେ ବିଶ୍ୱାସ କରି ନାହାନ୍ତି ଓ କିଏ ତାଙ୍କୁ ଶତ୍ରୁ
୬୫ ହାତରେ ଧରାଇ ଦେବ ଯୀଶୁ ଆରମ୍ଭରୁ ଜାଣିଥିଲେ । ଯୀଶୁ କହିଲେ,
“ଏଣୁ ମୁଁ କହୁଥିଲି, ପିତାଙ୍କର ଚାଳନା ନ ପାଇଲେ, କେହି ମୋର
ନିକଟକୁ ଆସିପାରେ ନାହିଁ ।”

୬୬ ଏଥିର ଫଳରେ ତାଙ୍କର ଅନେକ ଶିଷ୍ୟ ଫେରିଗଲେ, ସେମାନେ
୬୭ ଆଉ ତାଙ୍କର ସହଚର ହେଲେ ନାହିଁ । ଯୀଶୁ ଦ୍ୱାଦଶ ଶିଷ୍ୟଙ୍କୁ
ପଚାରିଲେ, “ତୁମେମାନେ ମଧ୍ୟ କଅଣ ମୋତେ ପରିତ୍ୟାଗ କରିବାକୁ
୬୮ ଚାହଁ ?” ଶିମୋନ ପିତର ଉତ୍ତର ଦେଲେ, “ପ୍ରଭୋ ! ଆଉ
୬୯ କାହା ନିକଟକୁ ଯିବା ? ତୁମର ଉକ୍ତିଗୁଡ଼ିକ ଅନନ୍ତ ଜୀବନ ଦେଇ
ପାରେ । ତୁମେହିଁ ଈଶ୍ୱରଙ୍କର ପବିତ୍ର ପୁରୁଷ, ଏହା ଆମେ ବିଶ୍ୱାସ
୭୦ କରୁଛୁ ଓ ଜାଣି ପାରୁଛୁ ।” ଯୀଶୁ କହିଲେ, “ମୁଁ କଅଣ ତୁମ ଦ୍ୱାଦଶ
ଜଣଙ୍କୁ ମନୋନୀତ କରିନାହିଁ ? ତଥାପି ତୁମ ମଧ୍ୟରେ ଜଣେ ଶୟତାନ
୭୧ ଅଛି । ସେ ଇଷ୍କାରିୟୋଥ ଶିମୋନଙ୍କ ପୁତ୍ର ଯିହୁଦାଙ୍କୁ ଲକ୍ଷ୍ୟ କରି ଏହା
କହିଥିଲେ । ସେ ଦ୍ୱାଦଶ ଶିଷ୍ୟଙ୍କ ମଧ୍ୟରେ ଜଣେ ଥାଇ ତାଙ୍କୁ ଶତ୍ରୁ
ହସ୍ତରେ ଧରାଇ ଦେବାକୁ ଯାଉଥିଲା ।

## ଯୀଶୁଙ୍କ ଭାଇମାନଙ୍କର ଅବିଶ୍ୱାସ :

୧ ଏହାପରେ ଯୀଶୁ ଗାଲିଲୀ ପ୍ରଦେଶରେ ଭ୍ରମଣ କରିବାକୁ
ଲାଗିଲେ । ଯିହୁଦୀନେତାମାନେ ତାଙ୍କୁ ହତ୍ୟା କରିବାର ସୁଯୋଗ
ଖୋଜୁଥିବାରୁ ସେ ଯିହୁଦା ପ୍ରଦେଶରେ ଭ୍ରମଣ କରିବାକୁ ଚାହିଁଲେ
୨ ନାହିଁ । ଯିହୁଦୀମାନଙ୍କର କୁଟୀରବାସ ପର୍ବର ସମୟ
୩ ସେତେବେଳେ ନିକଟବର୍ତ୍ତୀ ଥିଲା । ଏଣୁ ଯୀଶୁଙ୍କର ଭାଇମାନେ ତାଙ୍କୁ
କହିଲେ, “ତୁମେ ଏହି ସ୍ଥାନ ଛାଡ଼ି ଯିହୁଦାକୁ ଚାଲିଯାଅ, ତାହାହେଲେ
୪ ତୁମର ଶିଷ୍ୟମାନେ ତୁମେ ଯାହା ଯାହା କରୁଛ ସେ ସବୁକୁ ଦେଖି

ପାରିବେ । କେହି ଯଦି ନିଜକୁ ବିଖ୍ୟାତ କରିବାକୁ ଚାହେଁ ସେ ନିଜର
କାର୍ଯ୍ୟ ଗୋପନରେ କରେ ନାହିଁ । ତୁମେ ଯଦି ପ୍ରକୃତରେ
୫ ଏସବୁ କରିପାରୁଛ, ସାରା ଜଗତକୁ ତୁମର ପରିଚୟ ଦିଅ ।" ତାଙ୍କର
୬ ନିଜର ଭାଇମାନେ ମଧ୍ୟ ତାଙ୍କଠାରେ ବିଶ୍ୱାସ କରି ନ ଥିଲେ । ଯୀଶୁ
ନିଜର ଭାଇମାନଙ୍କୁ କହିଲେ, "ମୋର ଉପଯୁକ୍ତ ସମୟ ଏ ପର୍ଯ୍ୟନ୍ତ
ଉପସ୍ଥିତ ହୋଇନାହିଁ, ଯେ କୌଣସି ସମୟ ତୁମମାନଙ୍କର ନିମନ୍ତେ
୭ ଉପଯୁକ୍ତ । ଜଗତ ତୁମକୁ ଘୃଣା କରି ପାରିବ ନାହିଁ । କିନ୍ତୁ ମୋତେ
କରିବ, କାରଣ ମୁଁ ସ୍ପଷ୍ଟ ଭାବରେ ପ୍ରକାଶ କରେ ଯେ, ତାର ସମସ୍ତ କାର୍ଯ୍ୟ
୮ ମନ୍ଦ । ତୁମେମାନେ ସେହି ପର୍ବକୁ ଯାଅ, ମୁଁ ଯାଉ ନାହିଁ, କାରଣ
୯ ମୋର ଉପଯୁକ୍ତ ସମୟ ଏ ପର୍ଯ୍ୟନ୍ତ ହୋଇ ନାହିଁ" ଏହା କହି ସେ
ଗାଲିଲୀରେ ରହିଗଲେ ।

## ପର୍ବ ସମୟରେ ଯୀଶୁଙ୍କର ଉପଦେଶ :

୧୦ ଯୀଶୁଙ୍କର ଭାଇମାନେ ପର୍ବକୁ ଯିବାର ପରେ ଯୀଶୁ ଗଲେ,
୧୧ ଅବଶ୍ୟ ପ୍ରକାଶ୍ୟରେ ନୁହେଁ ଗୁପ୍ତରେ । ଯିହୁଦୀ ନେତାମାନେ ତାଙ୍କୁ
ପର୍ବରେ ଖୋଜୁଥାନ୍ତି; ସେମାନେ ପଚାରିଲେ, "ସେ କାହାନ୍ତି ?"
୧୨ ଲୋକମାନଙ୍କ ମଧ୍ୟରେ ତାଙ୍କ ବିଷୟରେ ତର୍କବିତର୍କ ଚାଲିଲା, କେହି
କେହି କହୁଥାନ୍ତି, "ସେ ଜଣେ ଉତ୍ତମ ଲୋକ" ଆଉ କେହି କେହି
୧୩ କହୁଥାନ୍ତି, "ନା, ନା ସେ ଲୋକମାନଙ୍କୁ କୁପଥରେ ନେଉଛି ।" କିନ୍ତୁ
ଯିହୁଦୀ ନେତାମାନଙ୍କ ଭୟରେ କେହି ପ୍ରକାଶ୍ୟରେ ତାଙ୍କ ବିଷୟରେ
କଥାବାର୍ତ୍ତା ହେଉ ନ ଥିଲେ ।

୧୪ ପର୍ବ ପ୍ରାୟ ଅଧା ହେବା ପରେ ଯୀଶୁ ମନ୍ଦିରରେ ପ୍ରବେଶ କରି
୧୫ ଶିକ୍ଷା ଦେବାକୁ ଲାଗିଲେ । ଯିହୁଦୀ ନେତାମାନେ ଆଶ୍ଚର୍ଯ୍ୟ ହୋଇ
କହିଲେ "ଏ ଲୋକଟି ଶିକ୍ଷା ନ ପାଇ ଏତେ ବିଷୟ କିପରି ଜାଣିଲା ?"
୧୬ ଯୀଶୁ ଉତ୍ତର ଦେଲେ, "ମୋର ଏହି ଶିକ୍ଷା ମୋ ନିଜର ନୁହେଁ, ଯେ

୧୭ ମୋତେ ପ୍ରେରଣ କରିଛନ୍ତି ତାଙ୍କର । ଯେଉଁ ବ୍ୟକ୍ତି ଈଶ୍ୱରଙ୍କର ଇଚ୍ଛା
ସାଧନ କରିବାକୁ ଚାହେଁ, ସେ ମୋର ଏ ଶିକ୍ଷା ଈଶ୍ୱରଙ୍କର ନା ମୋ
୧୮ ନିଜର ଉକ୍ତି ଜାଣି ପାରିବ । ଯେଉଁ ବ୍ୟକ୍ତି ନିଜ କଥା କହେ, ନିଜର
ଗୌରବ ତାର ଲକ୍ଷ୍ୟ । ଯେଉଁ ବ୍ୟକ୍ତି ତାର ପ୍ରେରଣକର୍ତ୍ତାଙ୍କର ଗୌରବ
୧୯ ଚାହେଁ, ସେ ସତ୍ୟନିଷ୍ଠ ବ୍ୟକ୍ତି । ତାର ନିକଟରେ ଛଳନା ନାହିଁ । ମୋଶା
କଅଣ ତୁମକୁ ବ୍ୟବସ୍ଥା ଦେଇ ନାହାନ୍ତି ? କିନ୍ତୁ ତୁମ ଭିତରୁ ତ କେହି
ବ୍ୟବସ୍ଥା ମାନୁ ନାହାନ୍ତି ? ତେବେ ମୋତେ କାହିଁକି ହତ୍ୟା କରିବାକୁ
୨୦ ଚାହୁଁଛ ?" ଜନତା ଉତ୍ତର ଦେଲେ, "ତୁମ ଭିତରେ ମନ୍ଦାତ୍ମା ଅଛି ।
୨୧ କିଏ ତୁମକୁ ହତ୍ୟା କରିବାକୁ ଚେଷ୍ଟା କରୁଛି ?" ଯୀଶୁ ଉତ୍ତର
ଦେଲେ, "ମୁଁ ବିଶ୍ରାମଦିନ ଗୋଟିଏ କାର୍ଯ୍ୟ କରିବାରୁ ତୁମେମାନେ
୨୨ ସମସ୍ତେ ଆଶ୍ଚର୍ଯ୍ୟ ହେଲ । ମୋଶା ତୁମର ପୁଅମାନଙ୍କୁ ସୁନ୍ନତ କରିବାକୁ
ଆଦେଶ ଦେଇଛନ୍ତି । ଅବଶ୍ୟ ମୋଶା ନୁହନ୍ତି, ତୁମର ପିତୃଲୋକେ
ଏହା ସ୍ଥାପନ କରିଥିଲେ । ଏଣୁ ତୁମେ ଜଣେ ଶିଶୁପୁଅକୁ ବିଶ୍ରାମବାରରେ
୨୩ ସୁନ୍ନତ କର । ଯଦି ମୋଶାଙ୍କର ନିୟମ ଲଙ୍ଘନ ନ ହେବାପାଇଁ
ଜଣେ ବ୍ୟକ୍ତି ବିଶ୍ରାମବାରରେ ସୁନ୍ନତ ହୋଇପାରେ, ତେବେ ଜଣେ
ବ୍ୟକ୍ତିକୁ ବିଶ୍ରାମବାରରେ ସୁସ୍ଥ କରିବାରୁ କାହିଁକି ତୁମେମାନେ ମୋ
୨୪ ଉପରେ ରାଗୁଛ ? ବାହ୍ୟିକ ଦୃଷ୍ଟିକୋଣରୁ ବିଚାର କର ନାହିଁ, ଯଥାର୍ଥ
ଦୃଷ୍ଟିକୋଣରୁ ବିଚାର କର ।"

**ଏ କଅଣ ଖ୍ରୀଷ୍ଟ :**

୨୫ କେତେକ ଯିରୂଶାଲମର ଲୋକ କହିଲେ, "ଏ କଅଣ ସେହି
୨୬ ବ୍ୟକ୍ତି ନୁହନ୍ତି, ଯାହାଙ୍କୁ ଲୋକେ ମାରି ଦେବାକୁ ଚାହୁଁଛନ୍ତି ? ଦେଖ,
ସେ ପ୍ରକାଶ୍ୟ ଭାବରେ କଥା କହୁଛନ୍ତି, ତଥାପି ତାଙ୍କ ବିରୁଦ୍ଧରେ କେହି
କିଛି କହି ପାରୁନାହାନ୍ତି ? ଆମର ନେତାମାନେ କଅଣ ପ୍ରକୃତରେ
୨୭ ବୁଝିପାରିଲେଣି ଯେ, ସେ ଖ୍ରୀଷ୍ଟ ? ଯେତେବେଳେ ଖ୍ରୀଷ୍ଟ ଆସିବେ, ସେ
କେଉଁ ସ୍ଥାନରୁ ଆସିବେ କେହି ଜାଣିବେ ନାହିଁ. କିନ୍ତୁ ଏହି ବ୍ୟକ୍ତି କେଉଁ

୨୮ ସ୍ଥାନରୁ ଆସିଅଛନ୍ତି ଆମେ ଜାଣୁ ।" ଯୀଶୁ ମନ୍ଦିରରେ ଶିକ୍ଷା ଦେବାବେଳେ
ଉଚ୍ଚସ୍ୱରରେ କହିଲେ, "ତୁମେ କଅଣ ମୋତେ ଜାଣ ଓ ମୁଁ କେଉଁ
ସ୍ଥାନରୁ ଆସିଛି ଜାଣ ? ମୁଁ ନିଜେ ନିଜେ ଆସିନାହିଁ, ଯେ ମୋତେ
୨୯ ପ୍ରେରଣ କରିଛନ୍ତି ସେ ବାସ୍ତବ । ତୁମେମାନେ ତାଙ୍କୁ ଜାଣ ନାହିଁ, କିନ୍ତୁ
ମୁଁ ତାଙ୍କୁ ଜାଣେ, କାରଣ ମୁଁ ତାଙ୍କ ନିକଟରୁ ଆସିଛି, ସେ ମୋତେ
୩୦ ପ୍ରେରଣ କରିଛନ୍ତି ।" ଏଥିରେ ସେମାନେ ତାଙ୍କୁ ଗିରଫ କରିବାକୁ
ଚେଷ୍ଟା କଲେ କିନ୍ତୁ କେହି ତାହାଙ୍କ ଉପରେ ହାତ ଦେଇ ପାରିଲେ
୩୧ ନାହିଁ । କାରଣ ତାଙ୍କର ସମୟ ସେପର୍ଯ୍ୟନ୍ତ ଉପସ୍ଥିତ ହୋଇ ନ ଥିଲା ।
ଜନତାର ମଧ୍ୟରୁ ଅନେକ ଯୀଶୁଙ୍କଠାରେ ବିଶ୍ୱାସ କଲେ, ସେମାନେ
କହିଲେ, "ଯେତେବେଳେ ଖ୍ରୀଷ୍ଟ ଆସିବେ ସେ କଅଣ ଏହି ବ୍ୟକ୍ତିଙ୍କଠାରୁ
ଅଧିକ ଅଲୌକିକ କାର୍ଯ୍ୟମାନ କରିବେ ?"

### ଯୀଶୁଙ୍କୁ ବନ୍ଦୀ କରିବା ପାଇଁ ପ୍ରହରୀମାନଙ୍କୁ ପ୍ରେରଣ :

୩୨ ଯୀଶୁଙ୍କ ବିଷୟରେ ଏସବୁ ମନ୍ତବ୍ୟ ଫାରୁଶୀମାନେ ଶୁଣି
ପାଇଲେ । ସେମାନେ ଓ ପ୍ରଧାନ ଯାଜକମାନେ ଯୀଶୁଙ୍କୁ ଗିରଫ
୩୩ କରିବାପାଇଁ କେତେଜଣ ପ୍ରହରୀଙ୍କୁ ପ୍ରେରଣ କଲେ । ଏଣୁ ଯୀଶୁ
ଲୋକମାନଙ୍କୁ କହିଲେ, "ଆଉ ଅଳ୍ପ ସମୟ ମାତ୍ର ମୁଁ ତୁମ ସହିତ
ରହିବି, ଯେ ମୋତେ ପ୍ରେରଣ କରିଛନ୍ତି ତାହାଙ୍କ ନିକଟକୁ ଫେରିଯିବି ।
୩୪ ତୁମେମାନେ ମୋତେ ଖୋଜିବ, କିନ୍ତୁ ପାଇବ ନାହିଁ, ମୁଁ ଯେଉଁଠାରେ
୩୫ ଥିବି ସେଠାକୁ ତୁମେମାନେ ଯାଇପାରିବ ନାହିଁ ।" ଯିହୁଦୀ ନେତାମାନେ
ପରସ୍ପର କଥାବାର୍ତ୍ତା ହେଲେ, "ସେ କେଉଁଠାକୁ ଯିବାକୁ ବାହାରିଛନ୍ତି
ଯେ, ଆମେ ତାଙ୍କର ସନ୍ଧାନ ପାଇବା ନାହିଁ ? ସେ କଅଣ ଗ୍ରୀକ୍‌ଲୋକ-
ମାନଙ୍କ ମଧ୍ୟରେ ବାସ କରୁଥିବା ଯିହୁଦୀମାନଙ୍କ ନିକଟକୁ ଯାଇ ଗ୍ରୀକ୍
୩୬ ଲୋକମାନଙ୍କ ମଧ୍ୟରେ ଶିକ୍ଷା ଦେବେ? ସେ କହୁଛନ୍ତି, ତୁମେମାନେ ମୋତେ
ଖୋଜିବ କିନ୍ତୁ ମୋର ସନ୍ଧାନ ପାଇବ ନାହିଁ ? ମୁଁ ଯେଉଁଠାରେ
ଥିବି ସେଠାକୁ ତୁମେ ଯାଇପାରିବ ନାହିଁ, ଏହାର ଅର୍ଥ କଅଣ ?"

## ଜୀବନ୍ତ ଜଳର ଝରଣା :

୩୭ ସେହି ପର୍ବର ଶେଷ ଦିନ ଗୋଟିଏ ଅତି ମୁଖ୍ୟ ଦିନ ଥିଲା । ସେ
ଦିନ ଯୀଶୁ ଠିଆ ହୋଇ ଉଚ୍ଚସ୍ୱରରେ କହିଲେ, "ଯଦି କାହାର ତୃଷା
୩୮ ହେଉଛି, ସେ ମୋ ନିକଟକୁ ଆସି ପାନ କରୁ । ଶାସ୍ତ୍ରର ଉକ୍ତି ଅନୁସାରେ,
ଯେ ମୋଠାରେ ବିଶ୍ୱାସ କରେ, ତାର ଅନ୍ତରରୁ ଜୀବନ୍ତ ଜଳର ଝରଣା
୩୯ ବହି ବହି ଆସିବ ।" ତାଙ୍କଠାରେ ବିଶ୍ୱାସ କରୁଥିବା ଲୋକେ ଯେଉଁ
ପବିତ୍ରାତ୍ମା ପ୍ରାପ୍ତ ହେବେ, ତାହାଙ୍କୁ ଲକ୍ଷ୍ୟ କରି ଯୀଶୁ ଏହା କହୁଥିଲେ ।
ଯୀଶୁ ସେତେବେଳେ ପର୍ଯ୍ୟନ୍ତ ଗୌରବାନ୍ୱିତ ହୋଇ ନ ଥିବାରୁ
ପବିତ୍ରାତ୍ମା ଦିଆ ହୋଇ ନ ଥିଲେ ।

## ଲୋକମାନଙ୍କ ମଧ୍ୟରେ ମତଭେଦ :

୪୦ ଜନତା ମଧ୍ୟରୁ କେତେକ ଏହି କଥା ଶୁଣି କହିଲେ, "ଏ ବ୍ୟକ୍ତି
୪୧ ନିଶ୍ଚୟ ଜଣେ ପ୍ରବକ୍ତା ।" କେହି କେହି କହିଲେ, "ଏହି ବ୍ୟକ୍ତି ସ୍ୱୟଂ
୪୨ ଖ୍ରୀଷ୍ଟ ।" କିନ୍ତୁ ଆଉ କେହି କେହି କହିଲେ, "ଖ୍ରୀଷ୍ଟ କଣ ଗାଲିଲୀରୁ
ଉତ୍ପନ୍ନ ହେବା ସମ୍ଭବ ? ଶାସ୍ତ୍ର କଅଣ କହେ ନାହିଁ ଦାଉଦଙ୍କର
ବଂଶରେ ଏବଂ ଯେଉଁ ବେଥଲେହେମ ଗ୍ରାମରେ ଦାଉଦ ବାସ କରୁଥିଲେ
୪୩ ସେଠାରେ ଖ୍ରୀଷ୍ଟ ଜନ୍ମଗ୍ରହଣ କରିବେ ?" ଏହିପରି ଯୀଶୁଙ୍କ ସମ୍ପର୍କରେ
୪୪ ଜନତା ଭିତରେ ମତଭେଦ ସୃଷ୍ଟି ହେଲା । ସେମାନଙ୍କ ମଧ୍ୟରୁ କେହି
କେହି ତାଙ୍କୁ ଗିରଫ କରିବାକୁ ଚାହୁଁଥିଲେ । କିନ୍ତୁ କେହି ତାଙ୍କ ଉପରେ
ହାତ ଦେଲେ ନାହିଁ ।

## ନେତାମାନଙ୍କର ଅବିଶ୍ୱାସ :

୪୫ ପ୍ରହରୀମାନେ ପ୍ରଧାନ ଯାଜକ ଓ ଫାରୂଶୀମାନଙ୍କ ନିକଟକୁ ଫେରି
ଯିବାରୁ ସେମାନେ ସେମାନଙ୍କୁ ପଚାରିଲେ, "କାହିଁକି ତାଙ୍କୁ ଧରି
୪୬ ଆଣିଲ ନାହିଁ ?" ପ୍ରହରୀମାନେ ଉତ୍ତର ଦେଲେ, "ଏହି ବ୍ୟକ୍ତି ଯେପରି

୪୭ କହନ୍ତି, ସେପରି କେହି କେବେ କହି ନ ଥିଲେ ।" ଫାରୁଶୀମାନେ
ଉତ୍ତର ଦେଲେ, "ତୁମମାନଙ୍କୁ ମଧ୍ୟ କ'ଣ ସେ ଭ୍ରାନ୍ତ କରି ସାରିଲେଣି ?
୪୮ ନେତା ବା ଫାରୁଶୀମାନଙ୍କ ମଧ୍ୟରୁ କେହି ଜଣେ ତାଙ୍କଠାରେ ବିଶ୍ୱାସ
୪୯ କରିବାର ଜାଣିଛ ? ଏ ଜନସାଧାରଣ ବ୍ୟବସ୍ଥା ଜାଣନ୍ତି ନାହିଁ,
୫୦ ସେମାନେ ଅଭିଶପ୍ତ ।" ଯେଉଁ ନୀକଦୀମ ଏଥିପୂର୍ବେ ଯୀଶୁଙ୍କୁ ସାକ୍ଷାତ
କରିବାକୁ ଯାଇଥିଲେ, ସେ ସେମାନଙ୍କ ମଧ୍ୟରେ ଥିଲେ; ସେ
୫୧ କହିଲେ, "ଆମର ବ୍ୟବସ୍ଥା ଅନୁସାରେ କୌଣସି ଜଣେ ବ୍ୟକ୍ତିର ମୁଖରୁ
ନ ଶୁଣି ଏବଂ ସେ କ'ଣ କଲେ ଅନୁସନ୍ଧାନ ନ କରି ତାଙ୍କୁ ଦଣ୍ଡ
୫୨ ଦେଇ ପାରିବା ନାହିଁ ।" ସେମାନେ ତାଙ୍କୁ କହିଲେ, "ତୁମେ ମଧ୍ୟ
କ'ଣ ଗାଲିଲୀରୁ ଆସିଛ ? ଶାସ୍ତ୍ର ଅଧ୍ୟୟନ କର, ଗାଲିଲୀରୁ କୌଣସି
ଭବିଷ୍ୟଦ୍‌ବକ୍ତା କେବେ ହେଲେ ଉତ୍ପନ୍ନ ହୁଏ ନାହିଁ ।"

## ବ୍ୟଭିଚାର କାର୍ଯ୍ୟରେ ଧୃତା ନାରୀ :

୮ ଏହାପରେ ପ୍ରତ୍ୟେକେ ନିଜ ନିଜ ଘରକୁ ଚାଲିଗଲେ । କିନ୍ତୁ
୧ ଯୀଶୁ ଜୀତ ପାହାଡ଼କୁ ଗଲେ । ଅତି ପ୍ରଭାତରେ ସେ ପୁନର୍ବାର ମନ୍ଦିରକୁ
ଆସିଲେ । ସମୁଦାୟ ଜନତା ତାଙ୍କର ଚତୁର୍ଦ୍ଦିଗରେ ଜୁଟି ହେବାରୁ
୩ ସେ ବସି ସେମାନଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ଏପରି ସମୟରେ
ଶାସ୍ତ୍ରୀ ଓ ଫାରୁଶୀମାନେ ଜଣେ ସ୍ତ୍ରୀ ଲୋକକୁ ଆଣି ସମସ୍ତଙ୍କର ଆଗରେ
ଠିଆ କରାଇ ଦେଲେ । ବ୍ୟଭିଚାର କର୍ମ କରୁଥିବା ବେଳେ ତାକୁ
୪ ଧରାଯାଇଥିଲା । ସେମାନେ ଯୀଶୁଙ୍କୁ କହିଲେ, "ଗୁରୁ ! ଏ ସ୍ତ୍ରୀଲୋକଟି
୫ ବ୍ୟଭିଚାର କାର୍ଯ୍ୟ କରୁଥିବା ବେଳେ ଧରାପଡ଼ିଛି । ଏପରି ସ୍ତ୍ରୀଲୋକକୁ
ପଥର ପକାଇ ମାରିବାକୁ ମୋଶା ଆମମାନଙ୍କୁ ବ୍ୟବସ୍ଥାରେ ଆଦେଶ
୬ ଦେଇଛନ୍ତି । ତେବେ ଆପଣ କ'ଣ କହନ୍ତି ।" ସେମାନେ ଯୀଶୁଙ୍କର
କଥାରୁ କିଛି ଛିଦ୍ର ବାହାର କରି ତାଙ୍କୁ ଦୋଷୀ କରିବା ଉଦ୍ଦେଶ୍ୟରେ
ଏପରି ପଚାରିଥିଲେ । କିନ୍ତୁ ଯୀଶୁ ମୁଣ୍ଡ ନୁଆଁଇ ଅଙ୍ଗୁଳି ଦ୍ୱାରା ଭୂମିରେ
୭ ଲେଖିବାକୁ ଲାଗିଲେ । ସେମାନେ ଠିଆ ହୋଇ ତାଙ୍କୁ ବାରମ୍ବାର ପ୍ରଶ୍ନ

କହିବାରୁ ସେ ସିଧା ହୋଇ ସେମାନଙ୍କୁ ପଚାରିଲେ, "ତୁମ ଭିତରୁ
ଯେଉଁ ବ୍ୟକ୍ତି କୌଣସି ପାପ କରି ନାହିଁ, ସେ ତାର ଉପରେ ପ୍ରଥମେ
୮ ପଥର ପକାଉ ।" ସେ ଆଉ ଥରେ ତଳକୁ ନଇଁ ପଡ଼ି ଭୂମିରେ
୯ ଲେଖିଲେ । ତାଙ୍କର କଥା ଶୁଣି ପ୍ରାଚୀନମାନଙ୍କଠାରୁ ଆରମ୍ଭ କରି
୧୦ ସମସ୍ତେ ଜଣକ ପରେ ଆଉ ଜଣେ ଚାଲିଗଲେ । ଯୀଶୁ କେବଳ ଏକା
ରହିଲେ । ସ୍ତ୍ରୀଲୋକଟି ସେଠାରେ ସେହିପରି ଠିଆ ହୋଇଥାଏ । ଯୀଶୁ
ସିଧା ହୋଇ ସେହି ସ୍ତ୍ରୀଲୋକକୁ ପଚାରିଲେ, "ସେମାନେ ସବୁ କୁଆଡ଼େ
ଗଲେ ? ତୁମକୁ ଦୋଷୀ ବୋଲି କହିବାକୁ କେହି ରହିଲେ ନାହିଁ ?"
୧୧ ସ୍ତ୍ରୀଲୋକଟି ଉତ୍ତର ଦେଲା, "ନା ପ୍ରଭୁ, କେହି ନାହାନ୍ତି ।" ଯୀଶୁ
କହିଲେ, "ମୁଁ ମଧ୍ୟ ତୁମକୁ ଦୋଷୀ କରୁନାହିଁ: ଯାଅ, ଆଜିଠାରୁ ଆଉ
କେବେ ପାପ କର ନାହିଁ ।"

### ଯୀଶୁ ଜଗତର ଜ୍ୟୋତିଃ :

୧୨ ଯୀଶୁ ପୁନର୍ବାର ସେମାନଙ୍କୁ କହିଲେ, "ମୁଁ ଜଗତର ଜ୍ୟୋତିଃ,
ଯେଉଁ ବ୍ୟକ୍ତି ମୋର ଅନୁଗମନ କରେ, ସେ ଜୀବନର ଜ୍ୟୋତିଃ ପାଇବ;
୧୩ ଏଣୁ କେବେହେଲେ ଅନ୍ଧାରରେ ଚାଲିବ ନାହିଁ ।" ଫାରୂଶୀମାନେ ଯୀଶୁଙ୍କୁ
କହିଲେ, "ତୁମେ ତୁମର ନିଜ ବିଷୟରେ ନିଜେ ସାକ୍ଷ୍ୟ ଦେଉଛ, ତୁମର
୧୪ ଏ ସାକ୍ଷ୍ୟ ବିଶ୍ୱାସଯୋଗ୍ୟ ନୁହେଁ ।" ଯୀଶୁ ଉତ୍ତର ଦେଲେ, "ମୁଁ
ମୋର ନିଜର ବିଷୟ ନିଜେ ସାକ୍ଷ୍ୟ ଦେଲେ ସୁଦ୍ଧା, ମୋର କଥା ସତ୍ୟ,
କାରଣ ମୁଁ କେଉଁଠାରୁ ଆସିଛି ଓ କେଉଁଠାକୁ ଯିବି ମୁଁ ଜାଣେ । ମୁଁ
କେଉଁଠାରୁ ଆସିଛି ଓ କେଉଁଠାକୁ ଯିବି ତୁମ୍ଭେମାନେ ଜାଣ ନାହିଁ ।
୧୫ ତୁମ୍ଭେମାନେ ଜାଗତିକ ଦୃଷ୍ଟିକୋଣରୁ ବିଚାର କରିଥାଅ । ମୁଁ କୌଣସି
୧୬ ବ୍ୟକ୍ତିର ବିଷୟରେ ବିଚାରନିଷ୍ପତ୍ତି କରେ ନାହିଁ, କିନ୍ତୁ ଯଦି ମୁଁ ବିଚାର
କରେ, ମୋର ବିଚାରନିଷ୍ପତ୍ତି ସତ୍ୟ, କାରଣ ଏଥିରେ ମୁଁ ଏକା
ନୁହେଁ ; ଯେଉଁ ପିତା ମୋତେ ପଠାଇଛନ୍ତି, ସେ ମୋ ସହିତ ଅଛନ୍ତି ।

୧୭ ତୁମମାନଙ୍କର ବ୍ୟବସ୍ଥାରେ ଲେଖାଅଛି ଯେ, ଦୁଇ ସାକ୍ଷୀ ଏକମତ
୧୮ ହୋଇ ଯାହା କହନ୍ତି, ତାହା ଯଥାର୍ଥ । ମୁଁ ମୋ ନିଜ ପକ୍ଷରେ ସାକ୍ଷ୍ୟ
ଦେଉଛି ପୁଣି ଯେଉଁ ପିତା ମୋତେ ପଠାଇଛନ୍ତି ସେ ମଧ୍ୟ ମୋ
୧୯ ପକ୍ଷରେ ସାକ୍ଷ୍ୟ ଦେଉଛନ୍ତି ।" ସେମାନେ ତାଙ୍କୁ ପ୍ରଶ୍ନ କଲେ, "ତୁମର
ପିତା କାହାନ୍ତି ?" ଯୀଶୁ ଉତ୍ତର ଦେଲେ, "ତୁମେମାନେ ମୋତେ
ଜାଣ ନାହିଁ କି ମୋର ପିତାଙ୍କୁ ଜାଣ ନାହିଁ, ଯଦି ମୋତେ ଜାଣିଥାଆନ୍ତ,
ତେବେ ମୋ ପିତାଙ୍କୁ ମଧ୍ୟ ଜାଣିଥାଆନ୍ତ ।"

୨୦ ମନ୍ଦିରର ଯେଉଁ କୋଠରୀରେ ଦାନପେଡ଼ି ସବୁ ରଖା ଯାଉଥିଲା,
ସେଠାରେ ଯୀଶୁ ଶିକ୍ଷା ଦେବା ବେଳେ ଏସବୁ କହୁଥିଲେ । କେହି
ତାଙ୍କୁ ଗିରଫ କଲେ ନାହିଁ, କାରଣ ସେତେବେଳେ ତାଙ୍କର ସମୟ
ଉପସ୍ଥିତ ହୋଇ ନ ଥିଲା ।

## ମୁଁ ଯେଉଁଠିକି ଯାଉଛି ସେଠାକୁ ତୁମେ ଯାଇପାରିବ ନାହିଁ

୨୧ ଯୀଶୁ ଆଉ ଥରେ ସେମାନଙ୍କୁ କହିଲେ, "ମୁଁ ଚାଲିଯିବି, ତୁମେ-
ମାନେ ମୋତେ ଖୋଜିବ, କିନ୍ତୁ ତୁମ ନିଜ ନିଜ ପାପରେ ମରିବ ।
ମୁଁ ଯେଉଁଠିକି ଯାଉଛି, ସେଠାକୁ ତୁମେମାନେ ଯାଇପାରିବ ନାହିଁ ।"
୨୨ ଯିହୁଦୀ ନେତାମାନେ କହିଲେ, "ସେ କହୁଛନ୍ତି, 'ମୁଁ ଯେଉଁଠିକି
ଯାଉଛି, ସେଠାକୁ ତୁମେମାନେ ଯାଇ ପାରିବ ନାହିଁ ।'' ଏହାର ଅର୍ଥ
୨୩ କଅଣ ? ସେ କଅଣ ଆତ୍ମହତ୍ୟା କରିବେ ?" ଯୀଶୁ ଉତ୍ତର ଦେଲେ,
"ଏହି ନିମ୍ନସ୍ଥ ଭୂଲୋକର ସହିତ ତୁମର ସମ୍ବନ୍ଧ, କିନ୍ତୁ ମୋର ସମ୍ବନ୍ଧ
ଊର୍ଦ୍ଧ୍ୱଲୋକର ସହିତ । ତୁମେମାନେ ଏ ଜଗତର, କିନ୍ତୁ ମୁଁ ଏ ଜଗତର
୨୪ ନୁହେଁ । ଏଣୁ ମୁଁ ତୁମମାନଙ୍କୁ କହେ, ତୁମେମାନେ ନିଜ ନିଜ ପାପରେ
ମରିବ । ଯଦି ତୁମେମାନେ ବିଶ୍ୱାସ କରିବ ନାହିଁ ଯେ, 'ମୁଁ ସିଏ, ସେ
୨୫ ମୁଁ', ତା'ହେଲେ ନିଜ ନିଜ ପାପରେ ମରିବ ।" ସେମାନେ ତାଙ୍କୁ
ପଚାରିଲେ, "ତୁମେ କିଏ ?" ଯୀଶୁ ଉତ୍ତର ଦେଲେ, "ମୁଁ ସିଏ ବୋଲି

୨୬ ତୁମ୍ଭମାନଙ୍କୁ କହି ଆସୁଛି ସେ ମୁଁ । ତୁମମାନଙ୍କୁ ମୋର ଆହୁରି ଅନେକ
ବିଷୟ କହି ବିଚାର କରିବା ଆବଶ୍ୟକ ଅଛି । ଯାହାହେଉ, ଯେ
ମୋତେ ପଠାଇଛନ୍ତି ସେ ସତ୍ୟ କହନ୍ତି । ମୁଁ ତାଙ୍କଠାରୁ ଯାହା
ଶୁଣିଛି, ତାକୁ କେବଳ ପୃଥିବୀରେ ଜଣାଇ ଦିଏ ।"

୨୭ ସେମାନେ ବୁଝି ପାରିଲେ ନାହିଁ ଯେ, ଯୀଶୁ ସେମାନଙ୍କୁ
୨୮ ପିତାଙ୍କ ବିଷୟରେ କହୁଥିଲେ । ଏଣୁ ଯୀଶୁ ସେମାନଙ୍କୁ କହିଲେ,
"ଯେତେବେଳେ ତୁମେମାନେ ମନୁଷ୍ୟପୁତ୍ରଙ୍କୁ ଉପରକୁ ଉଠାଇବ,
ସେତେବେଳେ ଜାଣିପାରିବ ଯେ, ମୁଁ ଯିଏ ସେ ମୁଁ । ସେତେବେଳେ
ତୁମେମାନେ ଜାଣିବ ଯେ, ମୁଁ ନିଜେ ନିଜେ କିଛି କରେ ନାହିଁ । ପିତା
୨୯ ମୋତେ ଯାହା ଶିଖାନ୍ତି ତାକୁଇ ମୁଁ କହେ । ଯେ ମୋତେ ପଠାଇଛନ୍ତି,
ସେ ମୋର ସହିତ ଅଛନ୍ତି, ସେ ମୋତେ ଏକାକୀ ଛାଡ଼ି ଦେଇ ନାହାନ୍ତି,
କାରଣ ଯାହା କଲେ ସେ ଆନନ୍ଦିତ ହୁଅନ୍ତି ତାହାଇ ମୁଁ ସବୁବେଳେ
୩୦ କରେ ।" ଯୀଶୁଙ୍କର ଏହି କଥାଗୁଡ଼ିକ ଶୁଣି ଅନେକ ତାହାଙ୍କଠାରେ
ବିଶ୍ୱାସ କଲେ ।

## ସ୍ୱାଧୀନ ଓ ଦାସ :

୩୧ ଯୀଶୁ ତାଙ୍କଠାରେ ବିଶ୍ୱାସ କରିଥିବା ଯିହୁଦୀମାନଙ୍କୁ କହିଲେ,
"ଯଦି ତୁମେମାନେ ମୋର ଶିକ୍ଷାଗୁଡ଼ିକୁ ମାନିବ, ତେବେ ମୋର ପ୍ରକୃତ
୩୨ ଶିଷ୍ୟ ହେବ । ତୁମେମାନେ ସତ୍ୟ ଜାଣିବ ପୁଣି ସେହି ସତ୍ୟ ତୁମ-
୩୩ ମାନଙ୍କୁ ସ୍ୱାଧୀନ କରିବ ।" ସେମାନେ ଉତ୍ତର ଦେଲେ, "ଆମେ
ଅବ୍ରାହାମଙ୍କର ବଂଶଧର । ଆମେ କେବେ କାହାର ଦାସ ହୋଇନାହୁଁ,
ତେବେ ଆମେ ସ୍ୱାଧୀନ ହେବୁ ବୋଲି କହିବାରେ ତୁମର ଉଦ୍ଦେଶ୍ୟ
୩୪ କଅଣ ?" ଯୀଶୁ ସେମାନଙ୍କୁ କହିଲେ, "ମୁଁ ତୁମକୁ ସତ୍ୟ କହୁଛି,
୩୫ ଯେଉଁ ବ୍ୟକ୍ତି ପାପ କରେ, ସେ ପାପର ଦାସ । ପରିବାର
ସହିତ ଦାସର ସମ୍ପର୍କ ଅସ୍ଥାୟୀ, କିନ୍ତୁ ପୁତ୍ରର ସମ୍ପର୍କ ଚିରସ୍ଥାୟୀ ।

୩୬ ଯଦି ପୁତ୍ର ତୁମକୁ ସ୍ୱାଧୀନ କରନ୍ତି, ତା'ହେଲେ ତୁମେମାନେ
୩୭ ପ୍ରକୃତରେ ସ୍ୱାଧୀନ ହେବ । ତୁମେମାନେ ଅବ୍ରାହାମଙ୍କର ବଂଶଧର, ଏହା
ମୁଁ ଜାଣେ । ତୁମେମାନେ ମୋତେ ହତ୍ୟା କରିବାକୁ ଚାହୁଁଛ, କାରଣ
ମୋର ଶିକ୍ଷା ତୁମମାନଙ୍କର ହୃଦୟରେ ପ୍ରବେଶ କରି ପାରୁନାହିଁ ।
୩୮ ମୋର ପିତା ମୋଠାରେ ଯାହା ପ୍ରକାଶ କରିଛନ୍ତି, ମୁଁ ତାହା କହେ,
କିନ୍ତୁ ତୁମମାନଙ୍କର ପିତା ତୁମକୁ ଯାହା କହିଛନ୍ତି, ତାହା ତୁମେ
କରୁଥାଅ ।"

୩୯ ସେମାନେ ଉତ୍ତର ଦେଲେ, "ଆମର ପିତା ଅବ୍ରାହାମ ।" ଯୀଶୁ
କହିଲେ, "ଯଦି ତୁମେ ପ୍ରକୃତରେ ଅବ୍ରାହାମଙ୍କର ସନ୍ତାନ ହୋଇଥାଅ,
୪୦ ତେବେ ସେ ଯାହା କରିଥିଲେ ତାହା ତୁମେ କରୁଥା'ନ୍ତ । ମୁଁ ଈଶ୍ୱରଙ୍କ-
ଠାରୁ ଯେଉଁ ସତ୍ୟ ଶୁଣିଅଛି, ତାହା ତୁମମାନଙ୍କୁ କହୁଛି, ତଥାପି
ମୋତେ ହତ୍ୟା କରିବାକୁ ଚେଷ୍ଟା କରୁଛ । ଅବ୍ରାହାମ ଏପରି କରି ନ
୪୧ ଥିଲେ । ତୁମେ ତୁମମାନଙ୍କ ପିତା ଯାହା କରିଥିଲେ ତାହାହିଁ କରୁଛ ।"
ସେମାନେ ଉତ୍ତର ଦେଲେ, "ସ୍ୱୟଂ ଈଶ୍ୱର ଆମର ଏକମାତ୍ର ପିତା,
୪୨ ଆମେ ତାଙ୍କର ପ୍ରକୃତ ସନ୍ତାନ ।" ଯୀଶୁ କହିଲେ, "ଯଦି ପ୍ରକୃତରେ
ଈଶ୍ୱର ତୁମର ପିତା ହୋଇଥାଆନ୍ତେ, ତୁମେମାନେ ମୋତେ ପ୍ରେମ
କରୁଥାଆନ୍ତ; କାରଣ ମୁଁ ପିତାଙ୍କ ନିକଟରୁ ଆସିଛି ଓ ବର୍ତ୍ତମାନ
ଏଠାରେ ଅଛି । ମୁଁ ନିଜ ଇଚ୍ଛାରୁ ଆସିନାହିଁ, ସେ ମୋତେ ପଠାଇ
୪୩ ଅଛନ୍ତି । ମୁଁ ଯାହା କହେ ତୁମେମାନେ ବୁଝିପାରୁ ନାହିଁ କାହିଁକି ?
ତାର କାରଣ, ମୋର ବାର୍ତ୍ତା ତୁମେମାନେ ଶୁଣି ସହ୍ୟକରି ପାରୁନାହିଁ ।
୪୪ ତୁମେମାନେ ତୁମର ପିତା ଶୟତାନର ସନ୍ତାନ, ତୁମେମାନେ ତୁମ ପିତା-
ଙ୍କର ଇଚ୍ଛା ପାଳନ କରିବାକୁ ଚାହଁ । ଆଦିରୁ ସେ ନରହନ୍ତା ଥିଲା ।
ସେ କେବେହେଲେ ସତ୍ୟର ସପକ୍ଷରେ ନ ଥିଲା, କାରଣ ତା'ଠାରେ
ସତ୍ୟ ନାହିଁ । ଯେତେବେଳେ ସେ ମିଥ୍ୟା କହେ, ସେତେବେଳେ ଯାହା
ତାର ପକ୍ଷରେ ସ୍ୱାଭାବିକ ତାହାହିଁ କରେ, କାରଣ ସେ ମିଥ୍ୟାବାଦୀ
୪୫ ଓ ସବୁ ପ୍ରକାର ମିଥ୍ୟାର ଜନ୍ମଦାତା । ମୁଁ ସତ୍ୟ କହେ,

୪୬ ଏଣୁ ତୁମେମାନେ ମୋତେ ବିଶ୍ୱାସ କରୁନାହଁ । ତୁମ ଭିତରୁ କିଏ
ପ୍ରମାଣ କରି ପାରିବ ଯେ, ମୁଁ ପାପ କରି ଦୋଷୀ ? ଯଦି ମୁଁ ସତ୍ୟ
୪୭ କହୁଛି, ତୁମେମାନେ ମୋତେ ବିଶ୍ୱାସ କରୁନାହଁ କାହିଁକି ? ଯେଉଁ
ବ୍ୟକ୍ତି ଈଶ୍ୱରଙ୍କଠାରୁ ଆସିଥାଏ, ସେ ଈଶ୍ୱରଙ୍କର କଥା ସବୁ ଶୁଣେ ।
ତୁମେମାନେ ଶୁଣିବ ନାହିଁ, କାରଣ ତୁମେମାନେ ଈଶ୍ୱରଙ୍କଠାରୁ
ଆସିନାହଁ ।”

**ଯୀଶୁ ଓ ଅବ୍ରାହାମ :**

୪୮ ଯିହୁଦୀମାନେ ଯୀଶୁଙ୍କୁ ଉତ୍ତର ଦେଲେ, “ଆମେ କ'ଣ ଠିକ୍
କହୁନାହୁଁ ଯେ, ତୁମେ ଜଣେ ଶମିରୋଣୀୟ ଓ ତୁମ ଭିତରେ ଭୂତ
୪୯ ଅଛି ?” ଯୀଶୁ ଉତ୍ତର ଦେଲେ, “ମୋଠାରେ ଭୂତ ନାହିଁ । ମୁଁ
୫୦ ପିତାଙ୍କୁ ସମ୍ମାନ ଦିଏ, କିନ୍ତୁ ତୁମେ ମୋତେ ଅସମ୍ମାନ କରୁଛ । ମୁଁ ନିଜ
ନିମନ୍ତେ ସମ୍ମାନ ଖୋଜୁ ନାହିଁ ; ଆଉ ଜଣେ ଅଛନ୍ତି, ସେ ଖୋଜନ୍ତି,
୫୧ ସେ ମୋର ସପକ୍ଷରେ ବିଚାର କରନ୍ତି । ମୁଁ ତୁମମାନଙ୍କୁ ସତ୍ୟ କହେ,
ଯେଉଁ ବ୍ୟକ୍ତି ମୋର ବାକ୍ୟ ପାଳନ କରେ, ସେ କେବେ
୫୨ ହେଲେ ମୃତ୍ୟୁଭୋଗ କରିବ ନାହିଁ । ଯିହୁଦୀମାନେ ତାଙ୍କୁ କହିଲେ,
ବର୍ତ୍ତମାନ ଆମେ ଜାଣିଲୁ ଯେ, ତୁମଠାରେ ଭୂତ ଅଛି । ଆମର ପିତା
ଅବ୍ରାହାମ ମୃତ୍ୟୁଭୋଗ କରିଛନ୍ତି, ପ୍ରବକ୍ତାମାନେ ମୃତ୍ୟୁଭୋଗ କରିଛନ୍ତି,
ତଥାପି ତୁମେ କୁହ, ଯେଉଁ ବ୍ୟକ୍ତି ମୋର ବାକ୍ୟ ପାଳନ କରେ, ସେ
୫୩ କେବେହେଲେ ମୃତ୍ୟୁଭୋଗ କରିବ ନାହିଁ । ଆମର ପିତା ଅବ୍ରାହାମ
ମୃତ୍ୟୁଭୋଗ କରିଛନ୍ତି, ତୁମେ ଅବଶ୍ୟ ତାଙ୍କ ଅପେକ୍ଷା ବଡ ନୁହଁ !
ନୁହେଁ କି ? ପ୍ରବକ୍ତାମାନେ ମଧ୍ୟ ମୃତ୍ୟୁଭୋଗ କରିଛନ୍ତି । ତୁମେ ତୁମ
୫୪ ବିଷୟରେ କ'ଣ କହୁଛ ?” ଯୀଶୁ ଉତ୍ତର ଦେଲେ, “ଯଦି ମୁଁ ମୋ
ନିଜର ମାନ ଖୋଜୁଥାଏ, ତେବେ ସେହି ମାନର କୌଣସି ମୂଲ୍ୟ
ନାହିଁ । ମୋର ପିତା, ଯାହାଙ୍କୁ ତୁମେମାନେ ତୁମର ଈଶ୍ୱର ବୋଲି
୫୫ କହୁଥାଅ, ସେ ମୋତେ ସମ୍ମାନିତ କରନ୍ତି । ତୁମେମାନେ ତାଙ୍କୁ ଜାଣି

ନାହିଁ, ମୁଁ ଜାଣେ । ଯଦି କହେ ଯେ, ମୁଁ ତାଙ୍କୁ ଜାଣେ ନାହିଁ,
ତେବେ ତୁମମାନଙ୍କ ପରି ମିଥ୍ୟାବାଦୀ ହେବି । କିନ୍ତୁ ମୁଁ ତାଙ୍କୁ
୫୬ ଜାଣେ ଓ ତାଙ୍କର କଥା ମାନେ । ତୁମମାନଙ୍କ ପିତା ଅବ୍ରାହାମ ମୋର
ଦିନ ଦେଖିବେ ବୋଲି ଉଲ୍ଲସିତ ହୋଇଥିଲେ, ସେ ତାହା ଦେଖିଲେ
୫୭ ଓ ଆନନ୍ଦିତ ହେଲେ ।" ସିହୁଦୀମାନେ ତାଙ୍କୁ କହିଲେ, "ତୁମର
ବୟସ ପଚାଶ ବର୍ଷ ପୁରା ହୋଇ ନ ଥିବ । ତୁମେ ଅବ୍ରାହାମଙ୍କୁ
୫୮ ଦେଖିଛ ?" ଯୀଶୁ ଉତ୍ତର ଦେଲେ, "ମୁଁ ସତ୍ୟ କହୁଛି, ଅବ୍ରାହାମଙ୍କ
୫୯ ଜନ୍ମ ପୂର୍ବରୁ ମୁଁ ଥିଲି ।" ସେମାନେ ଯୀଶୁଙ୍କ ଉପରେ ଫୋପାଡ଼ିବା
ପାଇଁ ପଥର ଉଠାଇଲେ. କିନ୍ତୁ ଯୀଶୁ ଲୁଚି ପଡ଼ିଲେ ପୁଣି ମନ୍ଦିର ଛାଡ଼ି
ପଳାଇଲେ ।

## ଯୀଶୁ ଜଣେ ଜନ୍ମାନ୍ଧକୁ ସୁସ୍ଥ କରିବା .

୧ ଯୀଶୁ ଯାଉଥିବା ବେଳେ ଜଣେ ଜନ୍ମାନ୍ଧକୁ ଦେଖିଲେ । ଶିଷ୍ୟ-
୨ ମାନେ ଯୀଶୁଙ୍କୁ ପ୍ରଶ୍ନ କଲେ, "ଗୁରୁ-! କାହା ପାପ ଫଳରେ ଏ
ଲୋକଟି ଅନ୍ଧ ହୋଇ ଜନ୍ମ ହୋଇଛି ? ତା'ର ନିଜର ନା ତାର
୩ ପିତାମାତାର ପାପ ହେତୁ ? ଯୀଶୁ ଉତ୍ତର ଦେଲେ. "ଅନ୍ଧ ହେବା
ସହିତ ତାର ବା ତାର ପିତାମାତାର ପାପର କୌଣସି ସମ୍ପର୍କ ନାହିଁ । ସେ
ସୁସ୍ଥ ହେବାରେ ଈଶ୍ୱରଙ୍କର ଶକ୍ତି ଯେପରି ପ୍ରକାଶିତ ହେବ, ଏଥିପାଇଁ
୪ ସେ ଅନ୍ଧ ହୋଇଛି । ମୋତେ ସେ ପଠାଇଛନ୍ତି ଦିନ ଥାଉଁ ଥାଉଁ
ତାଙ୍କର କାମରେ ଆମକୁ ଉଦ୍‌ଯୋଗୀ ହେବାକୁ ପଡ଼ିବ, ରାତି ଆସୁଛି,
୫ ଯେତେବେଳେ କେହି କିଛି କାର୍ଯ୍ୟ କରି ପାରିବେ ନାହିଁ । ମୁଁ ଏ
୬ ଜଗତରେ ଥିବା ପର୍ଯ୍ୟନ୍ତ ଏ ଜଗତର ଜ୍ୟୋତିଃ ।" ସେ ଏହା କହିସାରି
ଭୂମିରେ ଛେପ ପକାଇଲେ ଓ ସେ ଛେପରେ କାଦୁଅ କରି ତାକୁ
୭ ସେହି ଅନ୍ଧର ଦୁଇ ଚକ୍ଷୁରେ ଲେପି ଦେଲେ । ସେ ତାକୁ କହିଲେ,
"ଶିଲୋହ ପୋଖରୀକୁ ଯାଇ ମୁହଁ ଧୋଇ ପକାଅ ।" (ଶିଲୋହର ଅର୍ଥ
ପ୍ରେରିତ) । ସେ ଯାଇ ମୁହଁ ଧୋଇ ତାର ଦୃଷ୍ଟି ପାଇଲା ।

୮ ତାର ପ୍ରତିବାସୀମାନେ ଓ ଯେଉଁମାନେ ତାକୁ ଏହା ପୂର୍ବେ
ଭିକ୍ଷା କରୁଥିବାର ଦେଖିଥିଲେ, ସେମାନେ ପଚାରିଲେ, "ଏ ଲୋକଟି
୯ ପୂର୍ବରେ ବସି ଭିକ୍ଷା ମାଗୁ ନ ଥିଲା କି ?" କେହି କେହି କହିଲେ,
"ହଁ ସେତ !" ଆଉ କେହି କେହି କହିଲେ, "ନା, ଏ ତାର ପରି
ଦିଶୁଥିବା ଆଉ ଜଣେ ଲୋକ ।" ମାତ୍ର ସେ ଲୋକଟି ନିଜେ କହିଲା,
୧୦ "ମୁଁ ସେହି ଲୋକ ।" ସେମାନେ ତାକୁ ପଚାରିଲେ, "ତୁ କିପରି ଦୃଷ୍ଟି
୧୧ ପାଇଲୁ ?" ସେ ଉତ୍ତର ଦେଲା, "ଯୀଶୁ ନାମରେ ଜଣେ
ଲୋକ କାଦୁଅ କରି ମୋ ଆଖିରେ ଲେପି ଦେଲେ, ଆଉ କହିଲେ,
ଶିଲୋହକୁ ଯାଇ ମୁହଁ ଧୋଇ ପକାଅ । ମୁଁ ଯାଇ ସେଠାରେ ମୁହଁ
୧୨ ଧୋଇ ପକାଇବ ରୁ ମୋତେ ଦିଶିଲା ।" ସେମାନେ ପ୍ରଶ୍ନ କଲେ "ସେ
ଲୋକଟି କାହିଁ ?" ସେ ଉତ୍ତର ଦେଲା, ମୁଁ ଜାଣେ ନାହିଁ ?"

## ଫାରୁଶୀମାନଙ୍କ ଦ୍ୱାରା ଏ ଆଶ୍ଚର୍ଯ୍ୟ ଘଟଣାର ଅନୁସନ୍ଧାନ :

୧୩ ପୂର୍ବେ ଅନ୍ଧ ଥିବା ସେହି ଲୋକକୁ ଫାରୁଶୀମାନଙ୍କ ନିକଟକୁ
୧୪ ନିଆଗଲା । ଯେଉଁଦିନ ଯୀଶୁ କାଦୁଅ କରି ସେହି ବ୍ୟକ୍ତିକୁ ଦୃଷ୍ଟି
୧୫ ଦେଇଥିଲେ, ସେ ଦିନ ବିଶ୍ରାମବାର ଥିଲା । ଫାରୁଶୀମାନେ ଆଉ ଥରେ
ଏହି ବ୍ୟକ୍ତିକୁ ସେ କିପରି ଦୃଷ୍ଟିଶକ୍ତି ପାଇଲା ବୋଲି ପଚାରିଲେ । ସେ
କହିଲା, "ସେ ମୋ ଆଖି ଉପରେ କିଛି କାଦୁଅ ଲଗାଇଲେ, ତା'ପରେ
୧୬ ମୁଁ ମୁହଁ ଧୋଇ ପକାଇଲି, ବର୍ତ୍ତମାନ ଦେଖି ପାରୁଛି ।" କେତେକ
ଫାରୁଶୀ କହିଲେ, "ଯେ ଏହା କରିଛି, ସେ ଈଶ୍ୱରଙ୍କର ଲୋକ ନୁହେଁ,
କାରଣ ସେ ବିଶ୍ରାମବାର ମାନେ ନାହିଁ ।" ଏଣୁ ଆଉ କେହି କେହି
କହିଲେ, "ଜଣେ ପାପୀ ଲୋକ ଏପରି ଗୋଟିଏ ଅଲୌକିକ କାର୍ଯ୍ୟ
କିପରି କରି ପାରିବ ?" ସେମାନଙ୍କ ମଧ୍ୟରେ ମତଭେଦ ହେଲା ।
୧୭ ସେମାନେ ସେ ଅନ୍ଧକୁ ଆଉ ଥରେ ପ୍ରଶ୍ନ କଲେ, "ଯେଉଁ ଲୋକ
ତୋତେ ଦୃଷ୍ଟି ଦେଇଛି ତା' ବିଷୟରେ ତୋର କଅଣ କହିବାର
୧୮ ଅଛି ?" ସେ ଉତ୍ତର ଦେଲା, "ସେ ଜଣେ ପ୍ରବକ୍ତା ।" ଯିହୁଦୀନେତା-

ମାନେ ବିଶ୍ୱାସ କରି ପାରିଲେ ନାହିଁ ଯେ, ସେ ଲୋକଟି ଅନ୍ଧ ଥିଲା,
ଏବଂ ଦୃଷ୍ଟିଶକ୍ତି ପାଇଛି । ସେମାନେ ତାର ପିତାମାତାଙ୍କୁ
୧୯ ଡକାଇଲେ । ସେମାନେ ତାଙ୍କୁ ପଚାରିଲେ, "ଏ କଅଣ ତୁମ ପୁଅ ?
ତୁମେ କଅଣ କହୁଛ ଯେ, ସେ ଜନ୍ମରୁ ଅନ୍ଧ ଥିଲା ? ତା' ହେଲେ ସେ
୨୦ ବର୍ତ୍ତମାନ କିପରି ଦେଖୁଛି ?" ତାର ପିତାମାତା ଉତ୍ତର ଦେଲେ,
"ଆମେ ଜାଣୁ ଯେ, ସେ ଆମ ପୁଅ, ଆମେ ଜାଣୁ ଯେ, ସେ ଜନ୍ମରୁ
୨୧ ଅନ୍ଧ । ସେ ବର୍ତ୍ତମାନ କିପରି ଦେଖି ପାରୁଛି, କିମ୍ବା କିଏ ତାକୁ ଦୃଷ୍ଟି-
ଶକ୍ତି ଦେଲା ଆମେ ଜାଣିନାହୁଁ । ତାକୁ ପଚାରନ୍ତୁ, ତାର ତ ବୟସ
୨୨ ହେଲାଣି, ସେ ନିଜ କଥା ନିଜେ କହି ପାରିବ ।" ତାର ପିତାମାତା
ଏପରି ଉତ୍ତର ଦେଲେ, କାରଣ ସେମାନେ ସେ ଯିହୁଦୀନେତାମାନଙ୍କୁ
ଭୟ କରୁଥିଲେ ; ଯିହୁଦୀନେତାମାନେ ସେତେବେଳେ ଏକମତ
ହୋଇସାରିଥିଲେ ଯେ, ଯେଉଁ ବ୍ୟକ୍ତି ଯୀଶୁଙ୍କୁ ଖ୍ରୀଷ୍ଟ ବୋଲି ସ୍ୱୀକାର
୨୩ କରିବ, ତାକୁ ସମାଜଚ୍ୟୁତ କରାଯିବ, ଏଣୁ ତାର ପିତ ମାତା କହିଲେ,
୨୪ "ତାର ବୟସ ହେଲାଣି, ତାକୁ ପଚାରନ୍ତୁ ।" ସେମାନେ ଆଉ ଥରେ
ସେହି ଜନ୍ମାନ୍ଧକୁ ଡାକି କହିଲେ, "ପ୍ରଭୁଙ୍କ ସମ୍ମୁଖରେ ଶପଥ କରି ସତ
୨୫ କଥା କୁହ । ଆମେ ଜାଣୁ ଯେ ସେ ଲୋକ ପାପୀ ।" ସେହି ବ୍ୟକ୍ତି
ଉତ୍ତର ଦେଲା, "ସେ ପାପୀ କି ନାହିଁ ମୁଁ ଜାଣି ନାହିଁ । ଗୋଟିଏ
୨୬ ବିଷୟ ଜାଣେ, ମୁଁ ଅନ୍ଧ ଥିଲି, ବର୍ତ୍ତମାନ ଦେଖି ପାରୁଛି ।" ସେମାନେ
ପଚାରିଲେ, "ସେ ତୋତେ କଅଣ କଲେ ? କିପରି ତୋତେ ଦୃଷ୍ଟି
୨୭ ଦେଲେ ?" ସେ ଉତ୍ତର ଦେଲା, "ତାହା ମୁଁ ଆପଣମାନଙ୍କୁ କହି
ସାରିଛି । ଆପଣମାନେ ତ ବିଶ୍ୱାସ କରୁ ନାହାନ୍ତି । କାହିଁକି ଆଉ
ଥରେ ଶୁଣିବାକୁ ଚାହୁଁଛନ୍ତି ? ଆପଣମାନେ ମଧ୍ୟ ତାଙ୍କର ଶିଷ୍ୟ
୨୮ ହେବାକୁ ଚାହୁଁଛନ୍ତି ନା କଅଣ ?" ସେମାନେ ତାକୁ ଗାଳିଦେଇ
କହିଲେ, "ତୁ ତାର ଶିଷ୍ୟ, ଆମେ ସବୁ ମୋଶାଙ୍କର ଶିଷ୍ୟ ।
୨୯ ଆମେ ଜାଣୁ ଯେ, ଈଶ୍ୱର ମୋଶାଙ୍କ ସହିତ କଥା କହିଥିଲେ, କିନ୍ତୁ ଏ
ଲୋକ କେଉଁଠାରୁ ଆସିଛି, ଆମେ ଜାଣିନାହୁଁ ।" ସେ ଉତ୍ତର ଦେଲା,

"କି ଆଶ୍ଚର୍ଯ୍ୟ କଥା ? ସେ ମୋତେ ଦୃଷ୍ଟି ଦେଲେ, ତଥାପି ସେ
୩୧ କେଉଁଠୁ ଆସିଛନ୍ତି ଆପଣମାନେ ଜାଣନ୍ତି ନାହିଁ । ଆମେ ଜାଣୁ , ଈଶ୍ୱର
ପାପୀମାନଙ୍କର ପ୍ରାର୍ଥନା ଶୁଣନ୍ତି ନାହିଁ, ଯେଉଁମାନେ ତାଙ୍କର ଭକ୍ତ,
ତାଙ୍କର ଆଦେଶ ପାଳନ କରନ୍ତି, ସେମାନଙ୍କର ପ୍ରାର୍ଥନା ସେ ଶୁଣନ୍ତି ।
୩୨ ଆବହମାନ କାଳରୁ କେବେ କେହି ଜଣେ ଜନ୍ମାନ୍ଧକୁ ଦୃଷ୍ଟି ଦେବାର
୩୩ କଥା ଶୁଣା ଯାଇନାହିଁ । ଏହି ବ୍ୟକ୍ତି ଈଶ୍ୱରଙ୍କଠାରୁ ଆସି ନ ଥିଲେ
୩୪ କିଛି କରିପାରି ନ ଥାନ୍ତେ ।" ସେମାନେ ଉତ୍ତର ଦେଲେ, "ପାପରେ
ତୋର ଜନ୍ମ, ପାପରେ ବଢ଼ି ଆସିଛୁ, ତୁ ପୁଣି ଆମକୁ ଶିକ୍ଷା ଦେବୁ !"
ସେମାନେ ତାକୁ ସମାଜଘରୁ ବାହାର କରିଦେଲେ ।

**ଆଧ୍ୟାତ୍ମିକ ଅନ୍ଧତା :**

୩୫ ତାକୁ ସମାଜଘରୁ ବାହାର କରି ଦେବାର ଖବର ଯୀଶୁ
ପାଇଲେ; ସେ ତାର ଦେଖା ପାଇ କହିଲେ, "ତୁମେ କଅଣ ମନୁଷ୍ୟ-
୩୬ ପୁତ୍ରଙ୍କଠାରେ ବିଶ୍ୱାସ କର ?" ସେହି ବ୍ୟକ୍ତି ଉତ୍ତର ଦେଲା,
"ମହାଶୟ ! ସେ କିଏ କହି ଦିଅନ୍ତୁ, ତା'ହେଲେ ମୁଁ ତାଙ୍କଠାରେ
୩୭ ବିଶ୍ୱାସ କରିବି ?" ଯୀଶୁ ତାକୁ କହିଲେ, "ତୁ ତାଙ୍କୁ ଦେଖି ସାରିଛୁ ।
୩୮ ଯେ ତୁମ ସହିତ କଥା କହୁଛନ୍ତି, ସେ ସେହି ବ୍ୟକ୍ତି ।" "ପ୍ରଭୋ ମୁଁ
ବିଶ୍ୱାସ କରେ" କହି ଦେଇ ଲୋକଟି ଯୀଶୁଙ୍କ ଆଗରେ ଆଣ୍ଠେଇ
୩୯ ପଡ଼ିଲା । ଯୀଶୁ କହିଲେ, "ମୁଁ ଏହି ଜଗତକୁ ଆସିଛି ବିଚାର
କରିବାକୁ, ଯେ ଅନ୍ଧ ତାକୁ ଦୃଷ୍ଟି ଦେବା ପାଇଁ ଓ ଯେ ଦୃଷ୍ଟି ପାଇଛି
୪୦ ତାକୁ ଅନ୍ଧ କରିବା ପାଇଁ ।" ତାହାଙ୍କ ସହିତ ଥିବା କେତେକ ଫାରୁଶୀ
କହିଲେ, "ତା'ହେଲେ କଅଣ ଆମେ ସବୁ ମଧ୍ୟ ଅନ୍ଧ ବୋଲି ଭାବୁଛ ?"
୪୧ ଯୀଶୁ ଉତ୍ତର ଦେଲେ, "ତୁମେମାନେ ଅନ୍ଧ ହୋଇଥିଲେ ଦୋଷ
ହୋଇ ନଥାନ୍ତା. ତୁମେ କହୁଛ 'ଆମେ ଦେଖି ପାରୁଛୁ'. ଏଥିରୁ ଜଣା
ପାଉଛି ଯେ, ତୁମମାନଙ୍କର ଦୋଷ ଏବେ ସୁଦ୍ଧା ରହିଛି ।"

### ମେଷଶାଳାର ଦୃଷ୍ଟାନ୍ତ :

୧୦ "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ଯେଉଁ ବ୍ୟକ୍ତି ଦ୍ୱାର ଦେଇ
ମେଷଶାଳାରେ ପ୍ରବେଶ ନ କରି ଅନ୍ୟ କୌଣସି ସ୍ଥାନରେ ଚଢ଼ି ପ୍ରବେଶ
୨ କରେ ସେ ଚୋର ଓ ଦସ୍ୟୁ । ଯେଉଁ ବ୍ୟକ୍ତି ଦ୍ୱାର ଦେଇ ପ୍ରବେଶ
୩ କରେ, ସେ ମେଷମାନଙ୍କର ପ୍ରତିପାଳକ । ଦ୍ୱାରପାଳ ତାର ପାଇଁ ଦ୍ୱାର
ଖୋଲି ଦିଏ । ସେହି ମେଷପାଳକ ନିଜର ମେଷମାନଙ୍କୁ ନାମ ଧରି
ଡାକିଲା ବେଳେ ତାର ମେଷମାନେ ତାର ସ୍ୱର ବାରିପାରନ୍ତି । ସେ
୪ ସେମାନଙ୍କୁ ବାହାରକୁ ଅଡ଼ାଇ ନିଏ । ସେ ସେମାନଙ୍କୁ ବାହାର କରି
ସାରି ସେମାନଙ୍କର ଆଗେ ଆଗେ ଚାଲେ । ମେଷମାନେ ତାର ପଛରେ
୫ ଚାଲନ୍ତି, କାରଣ ସେମାନେ ତାର ସ୍ୱର ଜାଣିଥାନ୍ତି । ସେମାନେ ଅନ୍ୟ
ଜଣଙ୍କର ପଛରେ ଯିବେ ନାହିଁ । ତାର ସ୍ୱର ସେମାନଙ୍କର ଅଜଣା
୬ ଥିବାରୁ ସେମାନେ ତା' ପାଖରୁ ଦୌଡ଼ି ପଳାଇବେ ।" ଯୀଶୁ ସେ-
ମାନଙ୍କୁ ଏହି ଦୃଷ୍ଟାନ୍ତ କହିଲେ, କିନ୍ତୁ ଏହାର ଭାବ ସେମାନେ ବୁଝି
ପାରିଲେ ନାହିଁ ।

### ଯୀଶୁ ଉତ୍ତମ ମେଷପାଳକ :

୭ ଏଣୁ ଯୀଶୁ ପୁନର୍ବାର କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି,
୮ ମୁଁ ମେଷମାନଙ୍କ ନିମନ୍ତେ ଦ୍ୱାର । ଯେତେ ମୋର ପୂର୍ବରେ ଆସିଥିଲେ,
ସେମାନେ ଚୋର ଓ ଡକାଇତ, କିନ୍ତୁ ମେଷମାନେ ସେମାନଙ୍କର କଥାରେ
୯ କାନ ଦେଲେ ନାହିଁ । ସ୍ୱୟଂ ମୁଁ ଦ୍ୱାର । ଯେ ମୋର ଦେଇ ଶାଳାରେ
ପ୍ରବେଶ କରେ, ସେ ରକ୍ଷା ପାଇବ । ସେ ଭିତରକୁ ଆସିବ, ବାହାରକୁ
୧୦ ଯିବ ଏବଂ ଚରିପାଇବ । ଚୋର କେବଳ ଚୋରି, ହତ୍ୟା ଓ ବିନାଶ
କରିବାକୁ ଆସେ । ମୁଁ ଆସିଛି ସେମାନେ ଯେପରି ଜୀବନ ପାଇବେ ;
ସେହି ଜୀବନ ସେମାନଙ୍କ ନିମନ୍ତେ ସବୁଦିଗରେ ପରିପୂର୍ଣ୍ଣ ହେବ ।

୧୧ "ମୁଁ ନିଜେ ଉତ୍ତମ ମେଷପାଳକ । ଉତ୍ତମ ମେଷପାଳକ ତାର
୧୨ ମେଷମାନଙ୍କ ପାଇଁ ନିଜର ଜୀବନ ଦିଏ । ଯେ ମଜୁରିଆ, ସେ ମେଷପାଳକ
୧୩ ନୁହେଁ । ମେଷମାନେ ତାର ନିଜର ନୁହଁନ୍ତି, ସେ ବାଘ ଆସିବାର
ଦେଖିଲେ, ମେଷଗୁଡ଼ିକୁ ଛାଡ଼ି ପଳାଇଯାଏ, ଫଳରେ ବାଘ ମେଷଗୁଡ଼ିକୁ
୧୪ ଆକ୍ରମଣ କରେ ଓ ମେଷସବୁ ଛିନ୍ନ ଭିନ୍ନ ହୋଇ ଯାଆନ୍ତି । ମଜୁରିଆ
୧୫ ସେମାନଙ୍କୁ ଛାଡ଼ି ପଳାଏ, କାରଣ ସେ ମଜୁରିଆ, ମେଷମାନଙ୍କର ଲାଗି
ତାର ଚିନ୍ତା ନାହିଁ ! ମୁଁ ନିଜେ ଉତ୍ତମ ମେଷପାଳକ, ମୋର ପିତା
ମୋତେ ଜାଣନ୍ତି ଓ ମୁଁ ମୋର ପିତାଙ୍କୁ ଜାଣେ, ସେହିପରି ମୋର
ମେଷମାନେ ମୋତେ ଜାଣନ୍ତି ଓ ମୁଁ ସେମାନଙ୍କୁ ଜାଣେ । ମୁଁ
୧୬ ମେଷମାନଙ୍କ ନିମନ୍ତେ ପ୍ରାଣ ଦେବାକୁ ପ୍ରସ୍ତୁତ । ମୋର ଆହୁରି ଅନେକ
ମେଷ ଅଛନ୍ତି । ସେମାନେ ଏହି ପଲର ନୁହନ୍ତି । ସେମାନଙ୍କୁ ମଧ୍ୟ
ମୋତେ ଆଣିବାକୁ ପଡ଼ିବ । ସେମାନେ ମଧ୍ୟ ମୋର ସ୍ୱର ଶୁଣିବେ ।
ସେମାନେ ଜଣେ ପ୍ରଭୁପାଳକର ଅଧୀନରେ ଗୋଟିଏ ପଲର ହୋଇ
ରହିବେ ।

୧୭ "ମୁଁ ମୋର ଜୀବନକୁ ସମର୍ପଣ କରୁଛି, ପୁନର୍ବାର ତାହାକୁ
ଫେରାଇ ଆଣିବା ଉଦ୍ଦେଶ୍ୟରେ । ଏଣୁ ମୋର ପିତା ମୋତେ ପ୍ରେମ
୧୮ କରନ୍ତି । କେହି ମୋର ଜୀବନକୁ ମୋଠାରୁ ନେଇ ଯାଇ ନାହିଁ ।
ମୁଁ ତାହାକୁ ସ୍ୱଚ୍ଛନ୍ଦ ମନରେ ସମର୍ପଣ କରୁଛି । ତାହାକୁ ସମର୍ପଣ କରିବା
ଅଧିକାର ମୋର ଅଛି । ତାହାକୁ ଫେରାଇ ଆଣିବାର ଅଧିକାର ମଧ୍ୟ
ମୋର ଅଛି; ଏହା କରିବା ପାଇଁ ମୁଁ ପିତାଙ୍କଠାରୁ ଆଦେଶ ପାଇଛି ।"
୧୯ ଏହି ଉକ୍ତିଗୁଡ଼ିକ ହେତୁ ଯିହୁଦୀମାନଙ୍କ ମଧ୍ୟରେ ଆଉ ଥରେ ମତଭେଦ
୨୦ ଘଟିଲା । ସେମାନଙ୍କ ମଧ୍ୟରୁ ଅନେକ କହୁଥିଲେ, "ତାଠାରେ ମନ୍ଦଆତ୍ମା
୨୧ ଅଛି, ସେ ପାଗଳ ହୋଇଯାଇଛି, କାହିଁକି ତା'କଥା ଶୁଣୁଛ ?"
ଅନ୍ୟମାନେ କହୁଥିଲେ, ଯାହାକୁ ଭୂତ ଲାଗିଛି, ସେ କଅଣ ଏପରି କଥା
କହିପାରେ ? ଭୂତ କେବେ ଅନ୍ଧମାନଙ୍କୁ ଦୃଷ୍ଟି ଦେଇପାରେ ?"

## ଯିହୁଦୀମାନଙ୍କ ଦ୍ୱାରା ଯୀଶୁ ଅଗ୍ରାହ୍ୟ ହେବା

୨୨ ସେତେବେଳେ ଯିରୁଶାଲମରେ ପ୍ରତିଷ୍ଠାପର୍ବ ପାଳନର ସମୟ ପଡ଼ିଥି-
୨୩ ଥାଏ। ଶୀତକାଳ, ଯୀଶୁ ମନ୍ଦିରର ଶଲମୋନଙ୍କ ମଣ୍ଡପରେ ବୁଲୁଥାନ୍ତି।
୨୪ ଏତିକିବେଳେ ଯିହୁଦୀମାନେ ଘେରି ଯାଇ ତାଙ୍କୁ ପଚାରିଲେ, "ଆଉ
କେତେ କାଳ ଆମକୁ ସନ୍ଦେହରେ ରଖିବ ? ଯଦି ତୁମେ ଖ୍ରୀଷ୍ଟ, ଆମକୁ
୨୫ ସ୍ପଷ୍ଟ କହିଦିଅ।" ଯୀଶୁ କହିଲେ, "ମୁଁ ତୁମକୁ କହିସାରିଛି, କିନ୍ତୁ
ତୁମର ମୋ କଥାରେ ବିଶ୍ୱାସ ନାହିଁ। ମୁଁ ମୋ ପିତାଙ୍କ କ୍ଷମତାରେ
୨୬ ଯାହା ସବୁ କରୁଛି, ସେ ସବୁ ମୋର ସପକ୍ଷରେ କହେ। କିନ୍ତୁ
୨୭ ତୁମେମାନେ ମୋ ପଲର ମେଷ ନ ଥିବାରୁ ବିଶ୍ୱାସ କରୁନାହଁ। ମୋର
ମେଷମାନେ ମୋର ସ୍ୱର ଶୁଣନ୍ତି। ମୁଁ ସେମାନଙ୍କୁ ଜାଣେ ଏବଂ
୨୮ ସେମାନେ ମୋର ଅନୁସରଣ କରନ୍ତି। ମୁଁ ସେମାନଙ୍କୁ ଅନନ୍ତଜୀବନ
ଦିଏ। ସେମାନେ କେବେ ହେଲେ ବିନଷ୍ଟ ହେବେ ନାହିଁ, କୌଣସି
୨୯ ବ୍ୟକ୍ତି ସେମାନଙ୍କୁ ମୋ ନିକଟରୁ ଛଡ଼ାଇ ନେଇପାରିବ ନାହିଁ। ଯେଉଁ
ପିତା ମୋତେ ସେମାନଙ୍କୁ ଦେଇଛନ୍ତି, ସେ ସବୁଠାରୁ ବଡ଼; କେହି
ସେମାନଙ୍କୁ ମୋର ପିତାଙ୍କର ତତ୍ତ୍ୱାବଧାନରୁ ଛଡ଼ାଇ ନେଇ ପାରେ
୩୦ ନାହିଁ। ମୁଁ ଓ ମୋର ପିତା ଏକ।

୩୧ ଯିହୁଦୀମାନେ ଆଉଥରେ ଯୀଶୁଙ୍କ ଉପରେ ଫୋପାଡ଼ିବା ପାଇଁ
୩୨ ପଥର ଉଠାଇଲେ। ଯୀଶୁ ସେମାନଙ୍କୁ କହିଲେ, "ମୁଁ ପିତାଙ୍କଠାରୁ ପ୍ରାପ୍ତ
ଶକ୍ତିରେ ଅନେକ ଉତ୍ତମ କର୍ମ ତୁମମାନଙ୍କ ସମ୍ମୁଖରେ କରିଛି। ସେଗୁଡ଼ିକରୁ
କେଉଁଟିର ସକାଶେ ତୁମେମାନେ ପଥର ପକାଇବାକୁ ଯାଉଁଛ ?"
୩୩ ଯିହୁଦୀମାନେ ଉତ୍ତର ଦେଲେ, "ତୁମର କୌଣସି ଉତ୍ତମ କାର୍ଯ୍ୟ ସକାଶେ
ନୁହେଁ, ତୁମେ ଈଶ୍ୱରଙ୍କର ଅପମାନ କରୁଥିବାରୁ ତୁମକୁ ପଥର
ପକାଇ ମାରିବାକୁ ଯାଉଁଛୁ। କାରଣ ତୁମେ ଜଣେ ସାଧାରଣ ମନୁଷ୍ୟ
୩୪ ହୋଇ ନିଜେ ଈଶ୍ୱର ହେବାକୁ ଯାଉଁଛ ?" ଯୀଶୁ ଉତ୍ତର ଦେଲେ,
୩୫ "ତୁମ ନିଜ ବ୍ୟବସ୍ଥାରେ ଲେଖାଯାଇଛି, 'ମୁଁ କହିଲି, ତୁମେମାନେ
ଈଶ୍ୱର !' ଯେଉଁମାନଙ୍କୁ ଈଶ୍ୱରଙ୍କର ବାଣୀ ପ୍ରଦତ୍ତ ହୋଇଥିଲ

ସେମାନଙ୍କୁ ଈଶ୍ୱର କୁହାଯାଏ । ଶାସ୍ତ୍ରକୁ ଉପେକ୍ଷା କରାଯାଇ ନ ପାରେ
୩୬ ମୁଁ ପିତାଙ୍କ ଦ୍ୱାରା ମନୋନୀତ ହୋଇ ଏହି ଜଗତକୁ ପ୍ରେରିତ ହୋଇଅଛି
ତୁମେମାନେ କୁହ ଯେ, ମୁଁ ଈଶ୍ୱରଙ୍କର ପୁତ୍ର ବୋଲି କହି ଈଶ୍ୱରଙ୍କୁ
୩୭ ଅପମାନ ଦେଲି ? ଯଦି ମୁଁ ପିତାଙ୍କର କର୍ମସବୁ କରୁ ନ ଥାଏ,
୩୮ ମୋଠାରେ ବିଶ୍ୱାସ କରନାହିଁ । ଯଦି କରୁଥାଏ, ତୁମେମାନେ
ମୋଠାରେ ବିଶ୍ୱାସ ନ କଲେ ସୁଦ୍ଧା ଅନ୍ତତଃ ମୋର କାର୍ଯ୍ୟଗୁଡ଼ିକରେ
ବିଶ୍ୱାସ କର, ତା'ହେଲେ ତୁମେମାନେ ଜାଣିବ ଓ ବୁଝିବ ଯେ ପିତା
୩୯ ମୋଠାରେ ଓ ମୁଁ ପିତାଙ୍କଠାରେ ବିଦ୍ୟମାନ ।" ଆଉଥରେ ସେମାନେ
ତାଙ୍କୁ ଗିରଫ କରିବାକୁ ଚେଷ୍ଟା କଲେ, କିନ୍ତୁ ସେ ସେମାନଙ୍କର
ହାତରୁ ଖସି ପଳାଇଗଲେ ।

୪୦ ଯୀଶୁ ଆଉଥରେ ଯର୍ଦ୍ଦନ ନଦୀ ପାର ହୋଇ ଯେଉଁ ସ୍ଥାନରେ ପ୍ରଥମେ
ଯୋହନ ଜଳଦୀକ୍ଷା ଦେଉଥିଲେ ସେଠାକୁ ଚାଲିଗଲେ । ସେ ସେଠାରେ
୪୧ ବିଶ୍ରାମ କଲେ । ଅନେକ ଲୋକ ତାଙ୍କ ନିକଟକୁ ଆସିଲେ । ସେମାନେ
କହିଲେ, "ଯୋହନ କୌଣସି ଅଲୌକିକ କାର୍ଯ୍ୟ କରି ନଥିଲେ, କିନ୍ତୁ
ଏହି ବ୍ୟକ୍ତିଙ୍କ ବିଷୟରେ ଯାହା ଯାହା କହୁଥିଲେ ସେ ସବୁ ସତ୍ୟ ।
୪୨ ସେଠାରେ ଅନେକ ଲୋକ ତାହାଙ୍କଠାରେ ବିଶ୍ୱାସ କଲେ ।

## ଲାଜାରଙ୍କର ମୃତ୍ୟୁ

୧୧ ବେଥନିଆ ଗ୍ରାମରେ ବାସ କରୁଥିବା ଲାଜାର ନାମକ ଜଣେ ଲୋକ
ଅସୁସ୍ଥ ଥିଲେ । ଏହି ଗ୍ରାମରେ ମରିୟମ ଓ ତାଙ୍କର ଭଉଣୀ ମାର୍ଥା ବାସ
୨ କରୁଥିଲେ । ଏ ସେହି ମରିୟମ ଯେ, ପ୍ରଭୁଙ୍କର ପାଦରେ ସୁଗନ୍ଧ ତେଲ
ଢାଳି ନିଜର କେଶରେ ପୋଛି ପକାଇଥିଲେ । ତାଙ୍କର ଭାଇ ଲାଜାର
୩ ଅସୁସ୍ଥ ଥିଲେ । ସେ ଦୁଇ ଭଉଣୀ ଯୀଶୁଙ୍କ ନିକଟକୁ ସମ୍ବାଦ ଦେଲେ,
୪ "ପ୍ରଭୁ, ତୁମର ପ୍ରିୟ ବନ୍ଧୁ ଅସୁସ୍ଥ ।" ଯୀଶୁ ଖବର ପାଇ କହିଲେ,
"ଏ ଅସୁସ୍ଥତା ଲାଜାରଙ୍କର ମୃତ୍ୟୁ ଉଦ୍ଦେଶ୍ୟରେ ନୁହେଁ, ଏହା

୫ ଈଶ୍ୱରଙ୍କ ଗୌରବ ସାଧନ ଲାଗି ଘଟିଛି । ଏହାଦ୍ୱାରା ମନୁଷ୍ୟପୁତ୍ର
୬ ଗୌରବ ପାଇବେ ।' ଯୀଶୁ ମାର୍ଥା, ତାଙ୍କର ଭଉଣୀ ଓ ଲାଜାରଙ୍କୁ
ଭଲ ପାଉଥିଲେ । ଯୀଶୁ ଲାଜାରଙ୍କର ଅସୁସ୍ଥତାର ସମ୍ବାଦ ପାଇ
୭ ଯେଉଁଠାରେ ଥିଲେ, ସେଠାରେ ଆଉ ଦୁଇଦିନ ରହିଗଲେ । ତା'ପରେ
୮ ସେ ତାଙ୍କର ଶିଷ୍ୟମାନଙ୍କୁ କହିଲେ, "ଚାଲ, ଯିହୁଦାକୁ ଫେରିଯିବା ।"
ଶିଷ୍ୟମାନେ ଉତ୍ତର ଦେଲେ, "ଗୁରୁ, କିଛି ଦିନ ତଳେ, ଯିହୁଦୀମାନେ
ଆପଣଙ୍କୁ ପଥର ପକାଇ ମାରିବାକୁ ଚାହୁଁଥିଲେ । ସେଠାକୁ ଆଉଥରେ
୯ ଆପଣ ଯିବାକୁ ଚାହୁଁଛନ୍ତି ?" ଯୀଶୁ ଉତ୍ତରଦେଲେ, "ସମସ୍ତ ଦିନ ବାର
ଘଣ୍ଟା, ନୁହେଁ କି ? ତେଣୁ ଯଦି ଜଣେ ବ୍ୟକ୍ତି ଦିବସରେ ଚାଲେ ସେ
୧୦ ଝୁଣ୍ଟି ବ ନାହିଁ, କାରଣ ସେ ଏହି ପୃଥିବୀର ଆଲୋକ ଦେଖି ପାରୁଛି ।
୧୧ କିନ୍ତୁ ଯଦି ରାତିରେ ଚାଲେ ସେ ଝୁଣ୍ଟି ବ, କାରଣ ତାହାଠାରେ ଆଲୋକ
ନାହିଁ ।" ଯୀଶୁ ଏହା କହିସାରି କହିଲେ, "ଆମର ବନ୍ଧୁ ଲାଜାର
୧୨ ଶୋଇଛନ୍ତି, କିନ୍ତୁ ମୁଁ ଯାଇ ତାଙ୍କୁ ଉଠାଇବି ।" ଶିଷ୍ୟମାନେ ଉତ୍ତର
୧୩ ଦେଲେ, "ପ୍ରଭୁ, ଯଦି ସେ ଶୋଇଛନ୍ତି ସୁସ୍ଥ ହୋଇଯିବେ ।"
ଯୀଶୁଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ, ଲାଜାରଙ୍କ ମୃତ୍ୟୁ ଘଟିଛି, କିନ୍ତୁ
୧୪ ସେମାନେ ମନେ କଲେ ଯେ ସେ ପ୍ରାକୃତିକ ନିଦ୍ରା ବିଷୟରେ କହୁଛନ୍ତି ଏଣୁ
୧୫ ଯୀଶୁ ସେମାନଙ୍କୁ ସ୍ପଷ୍ଟ ଭାବରେ କହିଦେଲେ, "ଲାଜାର ପ୍ରାଣତ୍ୟାଗ
କରିଛନ୍ତି । ମୁଁ ତାଙ୍କ ପାଖରେ ନଥିବାରୁ ତୁମମାନଙ୍କ ନିମନ୍ତେ
୧୬ ଆନନ୍ଦିତ, କାରଣ ଏହା ଦ୍ୱାରା ତୁମର ବିଶ୍ୱାସ ଜାତ ହେବ । ଆସ,
ଆମେ ତାଙ୍କ ନିକଟକୁ ଯିବା ।" ଥୋମା (ଯାହାଙ୍କୁ ଯାଆଁଳା ଡାକନ୍ତି)
ସହଶିଷ୍ୟମାନଙ୍କୁ କହିଲେ "ଗୁରୁଙ୍କ ସହିତ ଆମେ ମଧ୍ୟ ଯାଉ, ଯେପରି
କି ଆମେ ମଧ୍ୟ ତାଙ୍କର ସହିତ ମୃତ୍ୟୁଭୋଗ କରିବା ।"

## ଯୀଶୁହିଁ ପୁନରୁତ୍ଥାନ ଓ ଜୀବନ :

୧୭ ଯୀଶୁ ପହଞ୍ଚି ଦେଖନ୍ତି ଯେ, ଲାଜାର ଚାରିଦିନ ଆଗରୁ ସମାଧି
୧୮ ପାଇ ସାରିଛନ୍ତି । ଯିରୂଶାଲମଠାରୁ ବେଥନିଆ ପ୍ରାୟ ଦୁଇ

୧୯ ଜିରୁଶାଲେମଠାରୁ । ଅନେକ ଯିହୁଦୀ ମାର୍ଥା ଓ ମରିୟମଙ୍କୁ ସେମାନଙ୍କର
୨୦ ଭାଇର ମୃତ୍ୟୁ ଘଟିଥିବାରୁ ସାନ୍ତ୍ୱନା ଦେବାକୁ ଆସିଥାନ୍ତି । ଯୀଶୁ
ଆସିବାର ସମ୍ବାଦ ପାଇ ମାର୍ଥା ତାଙ୍କୁ ଭେଟିବା ଉଦ୍ଦେଶ୍ୟରେ
୨୧ ବାହାରକୁ ଚାଲି ଆସିଲେ, କିନ୍ତୁ ମରିୟମ ଗୃହ ମଧ୍ୟରେ ଥାନ୍ତି । ମାର୍ଥା
ଯୀଶୁଙ୍କୁ କହିଲେ, "ପ୍ରଭୋ ! ଆପଣ ଯଦି ଥାଆନ୍ତେ ମୋ ଭାଇ ମର
୨୨ ନ ଥାନ୍ତା, କିନ୍ତୁ ମୁଁ ଜାଣେ, ବର୍ତ୍ତମାନ ସୁଦ୍ଧା ଆପଣ ଈଶ୍ୱରଙ୍କୁ ଯାହା
୨୩ ମାଗିବେ, ସେ ତାହା ଦେବେ ।" ଯୀଶୁ ତାଙ୍କୁ କହିଲେ, "ତୁମର
୨୪ ଭାଇ ବଞ୍ଚି ଉଠିବ ।" ମାର୍ଥା ଉତ୍ତର ଦେଲେ, "ମୁଁ ଜାଣେ, ସେ
୨୫ ଶେଷଦିନରେ ପୁନରୁତ୍ଥାନ ସମୟରେ ବଞ୍ଚି ଉଠିବ ।" ଯୀଶୁ ତାଙ୍କୁ
କହିଲେ, "ମୁଁ ପୁନରୁତ୍ଥାନ ଓ ଜୀବନ ଯେ ମୋଠାରେ ବିଶ୍ୱାସ କରେ
୨୬ ସେ ମଲେ ସୁଦ୍ଧା ବଞ୍ଚିବ । ଯେଉଁ ବ୍ୟକ୍ତି ବଞ୍ଚି ରହି ମୋଠାରେ ବିଶ୍ୱାସ
କରେ, ସେ କେବେ ହେଲେ ମରିବ ନାହିଁ । ଏହା କଅଣ ତୁମର
୨୭ ବିଶ୍ୱାସ ?" ସେ ଉତ୍ତର ଦେଲେ "ହଁ ପ୍ରଭୋ ! ମୁଁ ବିଶ୍ୱାସ କରେ ଯେ,
ଯାହାଙ୍କର ଜଗତକୁ ଆସିବାର ଥିଲା, ତୁମେ ସେହି ଖ୍ରୀଷ୍ଟ, ଈଶ୍ୱରଙ୍କ
ପୁତ୍ର ।"

**ଯୀଶୁଙ୍କର କ୍ରନ୍ଦନ :**

୨୮ ମାର୍ଥା ଏକଥା କହି ଦେଇ ଚାଲିଗଲେ । ସେ ତାଙ୍କର ଭଉଣୀ
ମରିୟମଙ୍କୁ ଗୋପନରେ ଡାକି କହିଲେ, "ଗୁରୁ ପହଞ୍ଚି ଗଲେଣି । ସେ
୨୯ ତୋତେ ଡାକୁଛନ୍ତି ।" ମରିୟମ ଏହା ଶୁଣିବାକ୍ଷଣି ଉଠିପଡ଼ି ତାଙ୍କୁ
୩୦ ଭେଟିବାକୁ ଗଲେ । ସେତେବେଳେ ଯୀଶୁ ସେହି ଗ୍ରାମରେ ପହଞ୍ଚି ନ
୩୧ ଥାନ୍ତି । ମାର୍ଥା ଯେଉଁଠାରେ ତାଙ୍କୁ ଭେଟିଲେ ସେଠାରେ ଥାନ୍ତି । ଯେଉଁ
ଯିହୁଦୀମାନେ ଘର ଭିତରେ ମରିୟମଙ୍କ ନିକଟରେ ଥାଇ ତାଙ୍କୁ ସାନ୍ତ୍ୱନା
ଦେଉଥିଲେ, ସେମାନେ ମରିୟମ ଉଠିପଡ଼ି ଶୀଘ୍ର ଚାଲିଯିବାର ଦେଖି
ତାଙ୍କ ପଛେ ପଛେ ଗଲେ । ସେମାନେ ମନେ କଲେ, ଯେ, ସେ ବିଳାପ
କରିବା ନିମନ୍ତେ ସମାଧି ସ୍ଥାନକୁ ଯାଉଛନ୍ତି ।

୩୨ ଯେଉଁଠାରେ ଯୀଶୁ ଥିଲେ, ସେଠାରେ ମରିୟମ ପହଞ୍ଚି ତାଙ୍କୁ
ସାକ୍ଷାତ କଲେ । ସେ ତାଙ୍କର ପାଦତଳେ ପଡ଼ିଯାଇ କହିଲେ "ପ୍ରଭୁ,
୩୩ ଯଦି ଏଠାରେ ଥାଆନ୍ତେ ମୋର ଭାଇ ତ ମରି ନଥାନ୍ତା।" ଯୀଶୁ
ଦେଖିଲେ ଯେ, ମରିୟମ କାନ୍ଦୁଛି ଏବଂ ତାହା ସହିତରେ ଥିବା
ଯିହୁଦୀମାନେ ମଧ୍ୟ କାନ୍ଦୁଛନ୍ତି ; ଏହା ତାଙ୍କର ହୃଦୟକୁ ସ୍ପର୍ଶ କରିବାରୁ
୩୪ ସେ ଅତିଶୟ ବିଚଳିତ ହେଲେ । ଯୀଶୁ ପଚାରିଲେ "ତୁମେ ତାକୁ
କେଉଁଠି ସମାଧି ଦେଇଛ" ? ସେମାନେ ଉତ୍ତର ଦେଲେ, 'ପ୍ରଭୁ, ଆସି
୩୫,୩୬ ଦେଖନ୍ତୁ ।" ଯୀଶୁ କାନ୍ଦିଲେ । ଏଣୁ ଯିହୁଦୀମାନେ କହିଲେ, "ସେ
୩୭ ତାକୁ କେତେ ଭଲ ପାଉଥିଲେ ଦେଖ ।" ଆଉ କେହି କେହି କହିଲେ,
"ସେ ଅନ୍ଧକୁ ଦୃଷ୍ଟି ଦେଇଥିଲେ, ନୁହେଁ କି ? ତା'ହେଲେ ସେ କଅଣ
ଲାଜାରକୁ ମୃତ୍ୟୁରୁ ରକ୍ଷା କରି ପାରି ନ ଥାନ୍ତେ ?"

**ଲାଜାର ପୁନର୍ଜୀବିତ ହେବା :**

୩୮ ଯୀଶୁ ପୁନର୍ବାର ଅତିଶୟ ବିଚଳିତ ହୋଇ ସମାଧି ନିକଟକୁ
ଗଲେ । ତାହା ଗୋଟିଏ ଗୁହା ; ତାର ପ୍ରବେଶ ପଥରେ ଗୋଟିଏ ପଥର
୩୯ ରଖା ଯାଇଥିଲା । ପଥରକୁ କାଢ଼ି ନେବାକୁ ଯୀଶୁ ଆଦେଶ ଦେଲେ ।
ମୃତ ବ୍ୟକ୍ତିର ଭଉଣୀ ମାର୍ଥା ଉତ୍ତର ଦେଲେ, "ପ୍ରଭୁ, ଦୁର୍ଗନ୍ଧ ହେବ ।
୪୦ ସେ ଚାରିଦିନ ହେଲା କବର ପାଇଲାଣି ।" ଯୀଶୁ ତାଙ୍କୁ କହିଲେ, "ମୁଁ
ତୁମକୁ କହି ନ ଥିଲି, ଯଦି ତୁମେ ବିଶ୍ୱାସ କରିବ ତା'ହେଲେ
୪୧ ଈଶ୍ୱରଙ୍କର ମହିମା ଦେଖିବ ?" ସେମାନେ ପଥରଟାକୁ କାଢ଼ିଦେଲେ ।
ଯୀଶୁ ଊର୍ଦ୍ଧ୍ୱଦୃଷ୍ଟି କରି କହିଲେ, "ପିତା, ଧନ୍ୟବାଦ ଦିଏ, କାରଣ ତୁମେ
୪୨ ମୋତେ ଶୁଣୁଛ । ମୁଁ ଜାଣେ ଯେ, ତୁମେ ସବୁବେଳେ ମୋତେ
ଶୁଣିଥାଅ, କିନ୍ତୁ ଏଠାରେ ଥିବା ଲୋକମାନଙ୍କ ନିମନ୍ତେ ଏହା କହୁଛି,
ଯେପରି ସେମାନେ ବିଶ୍ୱାସ କରିବେ ଯେ, ତୁମେ ମୋତେ ପ୍ରେରଣ
୪୩ କରିଛ ।" ଏହା କହିସାରି ସେ ଉଚ୍ଚ ସ୍ୱରରେ ଡାକିଲେ "ଲାଜାର,
୪୪ ବାହାରକୁ ଆସ ।" ମୃତ ଲୋକଟି ବାହାରି ଆସିଲା । ତାର ହାତଗୋଡ଼
ସମାଧିବସ୍ତ୍ରରେ ବନ୍ଧା ଯାଇଥାଏ, ତାର ମୁହଁର ଚାରିଆଡ଼େ ଲୁଗା ଥାଏ ।
ଯୀଶୁ କହିଲେ "ସବୁ ଫିଟାଇ ଦିଅ, ତାକୁ ଯିବାକୁ ଦିଅ ।"

## ଯୀଶୁଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର :

(ମାଥିଉ ୨୬ : ୧-୫ । ମାର୍କ ୧୪ : ୧-୨ । ଲୂକ ୨୨:୧-୨ ମଧ୍ୟ ପାଠ କର ।)

୪୫ ମରିୟମଙ୍କ ନିକଟକୁ ଆସିଥିବା ଯିହୁଦୀମାନଙ୍କ ମଧ୍ୟରୁ ଅନେକ
୪୬ ଯୀଶୁଙ୍କର କାର୍ଯ୍ୟ ଦେଖି ତାହାଙ୍କଠାରେ ବିଶ୍ୱାସ କଲେ । କିନ୍ତୁ
ସେମାନଙ୍କ ମଧ୍ୟରୁ କେହି କେହି, ଫାରୂଶୀମାନଙ୍କ ନିକଟକୁ ଫେରିଯାଇ
୪୭ ଯୀଶୁ ଯାହା ଯାହା କରିଥିଲେ ତାହା ସେମାନଙ୍କୁ ଜଣାଇଲେ । ଫାରୂଶୀ
ଓ ପ୍ରଧାନ ଯାଜକମାନେ ମହାସଭା ଡକାଇ କହିଲେ, "ଆମେ କଅଣ
୪୮ କରିବା ? ଏହି ବ୍ୟକ୍ତି ବହୁ ଅଲୌକିକ କାର୍ଯ୍ୟ କରୁଛି ! ଯଦି ଆମେ
ତାକୁ ଏମିତି ଛାଡ଼ି ଦେବା, ସମସ୍ତେ ତା'ଠାରେ ବିଶ୍ୱାସ କରିବେ ଓ
ରୋମୀୟ କର୍ତ୍ତୃପକ୍ଷମାନେ ଏହାର ପ୍ରତିକାର କରିବେ । ସେମାନେ ଆମର
୪୯ ମନ୍ଦିର ଓ ସମୁଦାୟ ଜାତିକୁ ନଷ୍ଟ କରି ଦେବେ ।" ସେମାନଙ୍କର
ମଧ୍ୟରେ ଥିଲେ ସେହି ବର୍ଷର ମହାଯାଜକ । ତାଙ୍କର ନାମ କୟାଫା । ସେ
୫୦ କହିଲେ, "ତୁମେମାନେ କିଛି ଜାଣ ନାହିଁ । ତୁମେ କଅଣ ବୁଝି
ପାରୁନାହଁ ଯେ, ତୁମର ସମୁଦାୟ ଜାତିର ବିନାଶ ହେବା ପରିବର୍ତ୍ତେ
ଲୋକମାନଙ୍କ ନିମନ୍ତେ ଜଣେ ବ୍ୟକ୍ତିର ମୃତ୍ୟୁ ଭୋଗ କରିବା
୫୧ ଶ୍ରେୟସ୍କର ?" ବାସ୍ତବରେ, ସେ ନିଜ ମନରୁ ଏ କଥା କହି ନ ଥିଲେ,
ସେ ସେହି ବର୍ଷର ମହାଯାଜକ ଥିବାରୁ ଏହି ଭବିଷ୍ୟଦ୍‌ବାଣୀ ବ୍ୟକ୍ତ
କରୁଥିଲେ ଯେ, ଯୀଶୁ ଯିହୁଦୀ ଜାତି ନିମନ୍ତେ ମୃତ୍ୟୁଭୋଗ କରିବାକୁ
୫୨ ଯାଉଛନ୍ତି—କେବଳ ସେମାନଙ୍କ ନିମନ୍ତେ ନୁହେଁ, ଈଶ୍ୱରଙ୍କର ଯେଉଁ
ସନ୍ତାନମାନେ ବିକ୍ଷିପ୍ତ ହୋଇ ରହିଛନ୍ତି, ସେମାନଙ୍କୁ ସଂଗ୍ରହ କରି ଏକ
୫୩ ଭୂତ କରିବା ପାଇଁ ସେ ମୃତ୍ୟୁଭୋଗ କରିବେ । ସେ ଦିନରୁ ଯିହୁଦୀ
୫୪ କର୍ତ୍ତୃପକ୍ଷମାନେ ଯୀଶୁଙ୍କୁ ବଧ କରିବା ପାଇଁ ଷଡ଼ଯନ୍ତ୍ର କଲେ । ଏଣୁ
ଯୀଶୁ ଯିହୁଦାରେ ପ୍ରକାଶ୍ୟ ଭାବରେ ଯାତାୟତ କଲେ ନାହିଁ । ସେ
ପ୍ରାନ୍ତର ନିକଟରେ ଥିବା ଏଫ୍ରୟିମ ନାମକ ଗୋଟିଏ ନଗରକୁ ଯାଇ
ସେଠାରେ ଶିଷ୍ୟମାନଙ୍କ ସଙ୍ଗରେ ରହି ଚାଲିଲେ ।

୫୫ ଯିହୁଦୀମାନଙ୍କର ନିସ୍ତାରପର୍ବ ନିକଟ ହେଉଥିବାରୁ ସେହି ପର୍ବର
ପୂର୍ବରୁ ଶୁଚୀକରଣ ବିଧି ପାଳନ କରିବା ପାଇଁ ପଲ୍ଲୀ ଅଞ୍ଚଳରୁ ବହୁ
୫୬ ଲୋକ ଯିରୂଶାଲମକୁ ଗଲେ । ସେମାନେ ଯୀଶୁଙ୍କୁ ଖୋଜୁଥିଲେ,
ସେମାନେ ମନ୍ଦିରରେ ଏକତ୍ର ହୋଇ ପରସ୍ପରକୁ ପଚାରିଲେ, "କଅଣ,
୫୭ ଭାବୁଛ ? ସେ କଅଣ ଏ ପର୍ବକୁ ଆସିବେ ?" ସେତେବେଳେ ପ୍ରଧାନ
ଯାଜକ ଓ ଫାରୂଶୀମାନେ ଆଦେଶ ଜାରି କରି ସାରିଥିଲେ ଯେ, ଯୀଶୁ
କେଉଁଠାରେ ଅଛନ୍ତି ଯେ ଜାଣିବ ସେ ଜଣାଇବ, ତା'ହେଲେ ତାଙ୍କୁ
ଗିରଫ କରିବେ ।

**ବେଥନିଆରେ ଯୀଶୁଙ୍କ ତୈଳାଭିଷେକ :**

(ମାଥିଉ ୨୬ : ୬-୧୩ । ମାର୍କ ୧୪ : ୩-୯ ପାଠ କର)

୧୨ ନିସ୍ତାରପର୍ବର ଛଅ ଦିନ ପୂର୍ବରେ ଯୀଶୁ ବେଥନିଆକୁ ଗଲେ
ଯେଉଁ ଲାଜାରଙ୍କୁ ଯୀଶୁ ପୁନର୍ଜୀବିତ କରିଥିଲେ, ସେ ସେଠାରେ
୨ ରହୁଥିଲେ । ସେଠାରେ ସେମାନେ ଯୀଶୁଙ୍କ ପାଇଁ ଭୋଜନ ପ୍ରସ୍ତୁତ
କଲେ; ମାର୍ଥା ପରଶୁଥିଲେ ଓ ଲାଜାର ଯୀଶୁଙ୍କ ସହିତ ଭୋଜନ
୩ କରୁଥିଲେ । ଏପରି ସମୟରେ ମରିୟମ ଅଧ କିଲୋ ଅତି ବହୁମୂଲ୍ୟ ଖାଣ୍ଟି
ଜଟାମାଂସୀ ତେଲ ଆଣିଲେ ଓ ଯୀଶୁଙ୍କ ପାଦ ଉପରେ ତାହା ଢାଳି
ଦେଇ ନିଜର କେଶରେ ସେ ପାଦକୁ ପୋଛି ପକାଇଲେ । ସେ ତେଲର
୪ ସୁଗନ୍ଧରେ ଘରଟିଯାକ ମହକି ଉଠିଲା । ଇଷ୍କାରିୟୋଥ୍ ଯିହୁଦା ନାମରେ
ଯୀଶୁଙ୍କର ଜଣେ ଶିଷ୍ୟ (ଏହି ଲୋକ ପରେ ଯୀଶୁଙ୍କ ଶତ୍ରୁମାନଙ୍କ
୫ ହାତରେ ଧରାଇବ) କହିଲା, "ଏହି ତେଲକୁ ତିନି ଶହ ଦେନାରିରେ*
୬ ବିକାଯାଇ ସେହି ଧନକୁ ଦରିଦ୍ରମାନଙ୍କୁ ଦିଆ ନ ଗଲା କାହିଁକି ?" ସେ
ଅବଶ୍ୟ ଦରିଦ୍ରମାନଙ୍କ ସକାଶେ ଚିନ୍ତିତ ବୋଲି ଏହା କହି ନ ଥିଲେ ।

---

*ରୋମୀୟମାନଙ୍କର ଗୋଟିଏ ରୌପ୍ୟ ମୁଦ୍ରା । ଏହା ତତ୍କାଳୀନ ମଜୁରିଆର ଗୋଟିଏ ଦିନର ମଜୁରି ଥିଲା ।

ସେ ଜଣେ ଚୋର ଥିଲେ । ତାଙ୍କର ପାଖରେ ଟଙ୍କା ପେଡ଼ି ଥିବାରୁ
୭ ଯେଉଁ ଦାନ ପଡୁଥିଲା ତାହାକୁ ସେ ଆତ୍ମସାତ୍ କରୁଥିଲେ । ଯୀଶୁ
କହିଲେ, "ତାକୁ ଛାଡ଼ି ଦିଅ, ତାର ଯାହା ଅଛି ତାକୁ ସେ ମୋର
୮ ସମାଧି ଦିନ ପାଇଁ ରଖୁ । ଦରିଦ୍ରମାନେ ସବୁବେଳେ ତୁମପାଖରେ
ରହିବେ, ମାତ୍ର ମୁଁ ତ ତୁମପାଖରେ ସବୁବେଳେ ନ ଥିବି ।"

## ଲାଜାରଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର :

୯ ଯୀଶୁ ବେଥନିଆରେ ଅଛନ୍ତି, ଏହା ଯିହୁଦୀମାନଙ୍କର ଗୋଟିଏ
ବଡ ଦଳ ଜାଣିପାରି ସେଠାକୁ ଗଲେ । ସେମାନେ କେବଳ ଯୀଶୁଙ୍କ
ପାଇଁ ନୁହେଁ, ଯେଉଁ ଲାଜାରଙ୍କୁ ଯୀଶୁ ବଞ୍ଚାଇ ଥିଲେ, ତାଙ୍କୁ ମଧ୍ୟ ଦେଖିବା
୧୦ ପାଇଁ ଗଲେ । ଏଣୁ ପ୍ରଧାନ ଯାଜକମାନେ ଲାଜାରଙ୍କୁ ମଧ୍ୟ ମାରି
୧୧ ପକାଇବାକୁ ଷଡ଼ଯନ୍ତ୍ର କଲେ ; କାରଣ ତାଙ୍କର ସକାଶୁ ଅନେକ
ଯିହୁଦୀ ସେମାନଙ୍କର ନିଜର ନେତାମାନଙ୍କୁ ଛାଡ଼ି ଯୀଶୁଙ୍କଠାରେ ବିଶ୍ୱାସ
କରିବାକୁ ଲାଗିଲେ ।

## ଯିରୂଶାଲମକୁ ବିଜୟଯାତ୍ରା :

୧୨ ପରଦିନ ନିସ୍ତାରପର୍ବକୁ ଆସିଥିବା ଗୋଟିଏ ବଡ଼ ଜନତା ଶୁଣିଲେ
୧୩ ଯେ, ଯୀଶୁ ଯିରୂଶାଲମକୁ ଆସୁଛନ୍ତି । ସେମାନେ ତାଳ ବାହୁଙ୍ଗା ଧରି
ଯୀଶୁଙ୍କୁ ଭେଟିବାକୁ ବାହାରିଲେ । ସେମାନେ ଉଚ୍ଚ ସ୍ୱରରେ କହୁଥାନ୍ତି,
"ଈଶ୍ୱରଙ୍କର ସ୍ତୁତି ହେଉ । ଯେ ପ୍ରଭୁଙ୍କ ନାମରେ ଆସୁଛନ୍ତି ତାଙ୍କୁ
ଈଶ୍ୱର ଆଶୀର୍ବାଦ କରନ୍ତୁ ; ଇସ୍ରାଏଲର ରାଜାଙ୍କୁ ଈଶ୍ୱର ଆଶୀର୍ବାଦ
୧୪ କରନ୍ତୁ ।" ଯୀଶୁ ଗଧଟିଏ ପାଇ ତାର ଉପରେ ଚଢି ଗଲେ । ଯେପରି
୧୫ ଶାସ୍ତ୍ରରେ ଉକ୍ତ ଅଛି, 'ସିୟୋନ ନଗର, ଭୟ କର ନା, ଦେଖ, ଗୋଟିଏ
୧୬ ଗଧ ଛୁଆ ଉପରେ ଚଢି ତୁମର ରାଜା ଆସୁଛନ୍ତି ।' ସେତେବେଳେ
ତାଙ୍କର ଶିଷ୍ୟମାନେ ଏହି କଥା ବୁଝି ପାରିଲେ ନାହିଁ; ସେତେବେଳେ

ସେ ଗୌରବାନ୍ୱିତ ହେଲେ, ସେତେବେଳେ ସେମାନଙ୍କର ମନେ
ପଡ଼ିଲା ଯେ, ତାଙ୍କ ସମ୍ପର୍କରେ ଏହା ଶାସ୍ତ୍ରରେ ଉଲ୍ଲେଖ ଥିଲା ଏବଂ ଏହା
ସେମାନେ ତାଙ୍କ ନିମନ୍ତେ କରିଥିଲେ ।

୧୭ ଯୀଶୁ ଲାଜାରଙ୍କୁ ସମାଧି ଭିତରୁ ଡାକି ଆଣି ମୃତ୍ୟୁରୁ ବଞ୍ଚାଇଲା ବେଳେ
ଯେଉଁ ଲୋକମାନେ ତାଙ୍କ ପାଖରେ ଥିଲେ ସେମାନେ ଏ ସମସ୍ତ ଘଟଣା
୧୮ ପ୍ରକାଶ କରିଥିଲେ । ଯୀଶୁ ଏହି ଅଲୌକିକ କାର୍ଯ୍ୟ କରିଥିବାର ଶୁଣି
୧୯ ଏହି ଜନତା ତାଙ୍କୁ ସାକ୍ଷାତ କରିବା ପାଇଁ ଆସିଥିଲେ । ଫାରୂଶୀମାନେ
ପରସ୍ପରକୁ କହିଲେ, "ଦେଖୁଛ ତ: ଆମେ ସମ୍ପୂର୍ଣ୍ଣ ବିଫଳ ହେଲୁ ।
ଦେଖ, ସମଗ୍ର ଜଗତ ତାଙ୍କର ପଛରେ ।"

## ଯୀଶୁଙ୍କ କେତେକ ଗ୍ରୀକ ଲୋକଙ୍କର ଅନ୍ୱେଷଣ :

୨୦ ପର୍ବ ସମୟରେ ଯେଉଁମାନେ ଯିରୂଶାଲମକୁ ଉପାସନା କରିବାକୁ
ଯାଇଥିଲେ, ସେମାନଙ୍କ ମଧ୍ୟରେ କେତେ ଜଣ ଗ୍ରୀକ୍ ଲୋକ ଥିଲେ ।
୨୧ ସେମାନେ ଗାଲିଲୀର ବେଥସାଇଦା ନିବାସୀ ଫିଲିପ୍‌ଙ୍କ ନିକଟକୁ ଆସି
୨୨ କହିଲେ, "ମହାଶୟ ଆମେ ଯୀଶୁଙ୍କୁ ଦେଖିବାକୁ ଚାହୁଁ ।" ଫିଲିପ୍
ଯାଇ ଏହା ଆନ୍ଦ୍ରିୟଙ୍କୁ ଜଣାଇଲେ ଏବଂ ସେମାନେ ଦୁଇଜଣ ଯାଇ
୨୩ ଯୀଶୁଙ୍କୁ ଜଣାଇଲେ । ଯୀଶୁ ଉତ୍ତର ଦେଲେ, "ମନୁଷ୍ୟପୁତ୍ରଙ୍କୁ ଗୌରବ
୨୪ ଦେବାର ମୁହୂର୍ତ୍ତ ପହଞ୍ଚିଛି । ମୁଁ ତୁମକୁ ସତ୍ୟ କହୁଛି, ଗହମ ଦାନାଟି
ମାଟି ଭିତରେ ପଡ଼ି ନ ମରିଲେ ତାହା ଗୋଟିଏ ମାତ୍ର ଶସ୍ୟ ହୋଇ
୨୫ ରହିବ । ଯଦି ତାହା ମରେ ବହୁଶସ୍ୟ ଉତ୍ପାଦନ କରିବ । ଯେଉଁ ବ୍ୟକ୍ତି
ନିଜ ଜୀବନକୁ ପ୍ରେମ କରେ, ସେ ତାହା ହରାଇବ ; ଯେଉଁ ବ୍ୟକ୍ତି
ଇହଜୀବନରେ ନିଜ ଜୀବନକୁ ଘୃଣା କରେ, ସେ ତାହା ଅନନ୍ତଜୀବନ
୨୬ ନିମନ୍ତେ ରକ୍ଷା କରି ପାରିବ । ଯେ ମୋର ସେବା କରିବାକୁ ଚାହେଁ,
ତାକୁ ମୋର ଅନୁସରଣ କରିବାକୁ ପଡ଼ିବ, ଯାହା ଫଳରେ ମୁଁ
ଯେଉଁଠାରେ ରହିବି ସେଠାରେ ମୋର ସେବକ ମଧ୍ୟ ରହି ପାରିବ ।
ଯେ ମୋର ସେବା କରେ, ତାକୁ ଈଶ୍ୱର ଗୌରବ ଦେବେ ।

ନିଜର ମୃତ୍ୟୁ ବିଷୟରେ ଯୀଶୁଙ୍କ ଉକ୍ତି :

୨୭ "ବର୍ତ୍ତମାନ ମୋର ମନ ବିଚଳିତ—ମୁଁ କଅଣ କହିବି ? ମୁଁ
କଅଣ କହିବି, 'ପିତଃ, ଏହି ମୁହୂର୍ତ୍ତଟି ମୋ ପାଇଁ ଆସିବାକୁ ଦିଅ ନାହିଁ ?'
୨୮ କିନ୍ତୁ ମୁଁ ଆସିଛି ଏହି ବେଦନା ଭିତରେ ଗତି କରିବାକୁ । ପିତଃ,
ତୁମର ନାମକୁ ଗୌରବାନ୍ୱିତ କର ।" ସେତେବେଳେ ସ୍ୱର୍ଗରୁ ଗୋଟିଏ
ବାଣୀ ହେଲା, "ମୁଁ ତାକୁ ଗୌରବାନ୍ୱିତ କରି ସାରିଛି, ଆଉ ଥରେ
କରିବି ।"

୨୯ ସେଠାରେ ଥିବା ଜନତା ସେହି ବାଣୀ ଶୁଣି କହିଲେ,
"ମେଘଗର୍ଜନ ହେଲା ।" ଅନ୍ୟମାନେ କହିଲେ, "ଜଣେ ଦୂତ ତାଙ୍କୁ
୩୦ କହିଲେ ।" ମାତ୍ର ଯୀଶୁ ସେମାନଙ୍କୁ କହିଲେ, "ଏହି ବାଣୀ ମୋର
୩୧ ପାଇଁ ନୁହେଁ, ତୁମର ପାଇଁ ହୋଇଛି । ବର୍ତ୍ତମାନହିଁ ଜଗତ ବିଚାରିତ
ହେବାର ସମୟ ; ବର୍ତ୍ତମାନହିଁ ଏ ଜଗତର ଶାସକ ବିତାଡ଼ିତ ହେବ ।
୩୨ ଯେତେବେଳେ ମୋତେ ପୃଥିବୀପୃଷ୍ଠରୁ ଊର୍ଦ୍ଧ୍ୱକୁ ଉଠାଇ ନିଆଯିବ,
ସେତେବେଳେ ମୁଁ ସମୁଦାୟ ମାନବଜାତିକୁ ମୋ ନିକଟକୁ ଆକର୍ଷଣ
୩୩ କରିବି ।" ସେ ଏହା କହିବା ଦ୍ୱାରା ସେ ଯେଉଁଭଳି ମୃତ୍ୟୁଭୋଗ
୩୪ କରିବାକୁ ଯାଉଥିଲେ ତାହାର ସୂଚନା ଦେଲେ । ଜନତା ଉତ୍ତର ଦେଲେ,
"ଆମର ବ୍ୟବସ୍ଥା କହେ, ଖ୍ରୀଷ୍ଟ ଚିରକାଳ ବଞ୍ଚି ରହିବେ । ତୁମେ
କିପରି କୁହ, 'ମନୁଷ୍ୟପୁତ୍ରଙ୍କୁ ଉତ୍ଥାପିତ ହେବାକୁ ପଡ଼ିବ ?' ଏ
୩୫ ମନୁଷ୍ୟପୁତ୍ର କିଏ ?" ଯୀଶୁ ଉତ୍ତର ଦେଲେ, "ଜ୍ୟୋତିଃ ତୁମ ମଧ୍ୟରେ
ଅଳ୍ପ ସମୟମାତ୍ର ରହିବ, ଜ୍ୟୋତିଃ ଥିବା ପର୍ଯ୍ୟନ୍ତ ତୁମେ ନିଜ ପଥରେ
ଚାଲୁଥାଅ, ତା'ହେଲେ ତୁମମାନଙ୍କୁ ଅନ୍ଧକାର ଗ୍ରାସ କରିବ ନାହିଁ ;
ଯେଉଁ ବ୍ୟକ୍ତି ଅନ୍ଧକାରରେ ଚାଲେ, ସେ କେଉଁ ଦିଗକୁ ଗତି କରୁଛି
୩୬ ଜାଣେ ନାହିଁ । ଜ୍ୟୋତିଃ ଥିବା ପର୍ଯ୍ୟନ୍ତ ତାହାଠାରେ ବିଶ୍ୱାସ କର,
ତା'ହେଲେ ତୁମେ ଜ୍ୟୋତିର ଲୋକ ହୋଇ ପାରିବ ।"

## ଯିହୁଦୀମାନଙ୍କର ଅବିଶ୍ୱାସ :

ଯୀଶୁ ଏହା କହି ସାରିବା ପରେ ଚାଲିଯାଇ ସେମାନଙ୍କଠାରୁ
୩୭ ଗୋପନରେ ରହିଲେ । ସେ ସେମାନଙ୍କର ଆଗରେ ଏସବୁ ଅଦ୍ଭୁତ
କାର୍ଯ୍ୟ କଲେ ସୁଦ୍ଧା ସେମାନେ ତାଙ୍କଠାରେ ବିଶ୍ୱାସ କଲେ ନାହିଁ,
୩୮ ଯେପରିକି ପ୍ରବକ୍ତା ଯିଶାଇୟଙ୍କର ଉକ୍ତି ସଫଳ ହୁଏ :

'ପ୍ରଭୋ, ଆମେ ଯେଉଁ ବାର୍ତ୍ତା ଦେଲୁ
ତାହା କିଏ ବିଶ୍ୱାସ କଲା ?
ପ୍ରଭୁ କାହାଠାରେ ନିଜର ଶକ୍ତି ପ୍ରକାଶ କଲେ ?'

୩୯ ଏଣୁ ସେମାନେ ବିଶ୍ୱାସ କରି ପାରିଲେ ନାହିଁ । କାରଣ ଯିଶାଇୟ ଏହା
ମଧ୍ୟ କହିଥିଲେ :

୪୦ 'ଈଶ୍ୱର ସେମାନଙ୍କର ଚକ୍ଷୁକୁ ଅନ୍ଧ କରି ଦେଇଛନ୍ତି,
ସେମାନଙ୍କର ଚିତ୍ତ ଦୃଢ଼ କରିଛନ୍ତି,
ଯେପରିକି ସେମାନଙ୍କର ଚକ୍ଷୁ ଦେଖିବ ନାହିଁ
କି ସେମାନଙ୍କର ଚିତ୍ତ ବୁଝିପାରିବ ନାହିଁ ।
ଓ ପ୍ରଭୁ କହନ୍ତି, ମୁଁ ଯେପରି ସେମାନଙ୍କୁ ସୁସ୍ଥ କରିଦେବି
ଏଥିପାଇଁ ସେମାନେ ମୋ ପ୍ରତି ଫେରିବେ ନାହିଁ ।'

୪୧ ଯିଶାଇୟ ଯୀଶୁଙ୍କର ଗୌରବ ଦେଖିଥିବାରୁ ଏହା କହିଥିଲେ । ତାଙ୍କର
ଉକ୍ତିଗୁଡ଼ିକ ଯୀଶୁଙ୍କ ଉଦ୍ଦେଶ୍ୟରେ ଥିଲା ।

୪୨ ଅନେକ ଯିହୁଦୀ କର୍ତ୍ତୃପକ୍ଷ ଯୀଶୁଙ୍କଠାରେ ବିଶ୍ୱାସ କଲେ ; ତଥାପି
ଫାରୂଶୀମାନଙ୍କ ହେତୁ ସେମାନେ ତାହା ପ୍ରକାଶ୍ୟରେ ସ୍ୱୀକାର କଲେ
ନାହିଁ; କାରଣ ତଦ୍ଦ୍ୱାରା ସେମାନଙ୍କର ସମାଜଗୃହରୁ ବହିଷ୍କୃତ ହେବାର
୪୩ ଆଶଙ୍କା ଥିଲା । ସେମାନେ ଈଶ୍ୱରଙ୍କର ସୁଖ୍ୟାତି ପାଇବା ଅପେକ୍ଷା
ମନୁଷ୍ୟଠାରୁ ସୁଖ୍ୟାତି ପାଇବାକୁ ଭଲ ପାଉଥିଲେ ।

## ଯୀଶୁଙ୍କର ଉକ୍ତିଦ୍ୱାରା ବିଚାର :

୪୪ ଯୀଶୁ ଉଚ୍ଚସ୍ୱରରେ କହିଲେ, "ଯେ ମୋଠାରେ ବିଶ୍ୱାସ କରେ,
ସେ କେବଳ ମୋଠାରେ ନୁହେଁ, ଯେ ମୋତେ ପ୍ରେରଣ କରିଛନ୍ତି
୪୫ ତାଙ୍କଠାରେ ମଧ୍ୟ ବିଶ୍ୱାସ କରେ । ଯେ ମୋତେ ଦର୍ଶନ କରେ,
୪୬ ସେ ମୋର ପ୍ରେରକଙ୍କୁ ମଧ୍ୟ ଦର୍ଶନ କରେ । ମୁଁ ଏ ଜଗତକୁ ଜ୍ୟୋତିଃ
ସ୍ୱରୂପେ ଆସିଛି, ଯେ କେହି ମୋଠାରେ ବିଶ୍ୱାସ କରେ, ସେ
୪୭ ଅନ୍ଧକାରରେ ରହିବ ନାହିଁ । ଯେ ମୋର ବାର୍ତ୍ତା ଶ୍ରବଣ କରି ତାକୁ
ପାଳନ କରେ ନାହିଁ, ତାର ବିଚାର ମୁଁ କରିବି ନାହିଁ । ମୁଁ ଜଗତ
୪୮ ବିଚାର କରିବାକୁ ନୁହେଁ, ତାର ପରିତ୍ରାଣ ପାଇଁ ଆସିଛି । ଯେ ମୋତେ
ଅଗ୍ରାହ୍ୟ କରେ ଏବଂ ମୋର ବାଣୀ ଗ୍ରହଣ କରେ ନାହିଁ ତାର ବିଚାର
କରିବାକୁ ଆଉ ଜଣେ ଅଛନ୍ତି । ମୋର ଯେଉଁ ଉକ୍ତି ମୁଁ ବ୍ୟକ୍ତ କରିଛି,
୪୯ ତାହା ଶେଷ ଦିନରେ ତାର ବିଚାରପତି ହେବ ! କାରଣ ମୁଁ ମୋର
ନିଜରୁ କିଛି ନାହିଁ, ଯେଉଁ ପିତା ମୋତେ ପ୍ରେରଣ କରିଛନ୍ତି, ସେ ମୁଁ
କଅଣ କହିବାକୁ ହେବ ଓ ପ୍ରକାଶ କରିବାକୁ ହେବ ଆଦେଶ ଦେଇଛନ୍ତି ।
୫୦ ମୁଁ ଜାଣେ ଯେ, ତାଙ୍କର ଆଦେଶ ଅନନ୍ତଜୀବନ ଆଣିଦିଏ । ଏଣୁ
ମୋର ପିତା ମୋତେ ଯାହା କହିବାକୁ କହିଛନ୍ତି, ତାହା ମୁଁ କହେ ।

## ଯୀଶୁଙ୍କ ଦ୍ୱାରା ଶିଷ୍ୟମାନଙ୍କର ପଦପ୍ରକ୍ଷାଳନ :

୧୩ ନିସ୍ତାରପର୍ବର ପୂର୍ବ ଦିନର ଘଟଣା । ଯୀଶୁ ଜାଣିଲେ ଯେ,
ତାଙ୍କର ଏହି ଜଗତ ପରିତ୍ୟାଗ କରି ପିତାଙ୍କ ନିକଟକୁ ଫେରି ଯିବାର
ସମୟ ପହଞ୍ଚିଛି । ଏହି ଜଗତରେ ଯେଉଁମାନେ ତାଙ୍କର ନିଜର ଥିଲେ,
ସେମାନଙ୍କୁ ସେ ସବୁବେଳେ ପ୍ରେମ କରୁଥିଲେ । ବର୍ତ୍ତମାନ ସେ
ସେମାନଙ୍କଠାରେ ତାଙ୍କର ପ୍ରେମ ଚୂଡ଼ାନ୍ତ ରୂପେ ପ୍ରକାଶ କଲେ । ଯୀଶୁ
ତାଙ୍କର ଶିଷ୍ୟମାନଙ୍କ ସହିତ ଭୋଜନରେ ବସିଥାନ୍ତି ।
ସେତେବେଳେ ଶୟତାନ ଇଷ୍କାରିୟୋଥ ସୀମୋନଙ୍କ ପୁଅ ଯିହୁଦାର

୩ ମନରେ ଯୀଶୁଙ୍କୁ ଶତ୍ରୁ ହସ୍ତରେ ଧରାଇଦେବାର ଚିନ୍ତା ଉଦ୍ରେକ କରି
ସାରିଥାଏ । ଯୀଶୁ ଜାଣିଥିଲେ ଯେ, ପିତା ତାଙ୍କୁ ସମ୍ପୂର୍ଣ୍ଣ କ୍ଷମତା
୪ ଦେଇଛନ୍ତି । ସେ ଜାଣିଥିଲେ ଯେ, ସେ ଈଶ୍ବରଙ୍କଠାରୁ ଆସିଥିଲେ ଓ
୫ ଈଶ୍ବରଙ୍କ ନିକଟକୁ ଯାଉଛନ୍ତି । ସେ ଭୋଜନାସନରୁ ଉଠି ନିଜର
ବହିଃପୋଷାକ ବାହାର କରି ଦେଲେ ଓ କଟିରେ ଗୋଟିଏ ଗାମୁଛା
ବେଷ୍ଟନ କଲେ । ତା'ପରେ ସେ ଗୋଟିଏ ପ୍ରକ୍ଷାଳନପାତ୍ରରେ କିଛି ଜଳ
୬ ଢାଳି ଶିଷ୍ୟମାନଙ୍କର ପାଦ ପ୍ରକ୍ଷାଳନ କରି କଟିରେ ବନ୍ଧାଥିବା
ଗାମୁଛାରେ ପୋଛି ଦେବାକୁ ଲାଗିଲେ । ସେ ସୀମୋନ ପିତରଙ୍କର
ନିକଟକୁ ଯେତେବେଳେ ଆସିଲେ, ସୀମୋନ ପିତର ତାଙ୍କୁ କହିଲେ,
୭ "ପ୍ରଭୁ ! ଆପଣ ମୋର ପାଦ ଧୋଇବେ ?" ଯୀଶୁ ଉତ୍ତର ଦେଲେ,
୮ "ମୁଁ କଅଣ କରୁଛି ବର୍ତ୍ତମାନ ବୁଝି ପାରୁନାହଁ, ପରେ ବୁଝିବ" ପିତର
କହିଲେ, "ଆପଣ କେବେ ହେଲେ ମୋର ପାଦ ଧୋଇବେ ନାହିଁ।"
ଯୀଶୁ ଉତ୍ତର ଦେଲେ, "ଯଦି ମୁଁ ତୁମର ପାଦ ଧୋଇବି ନାହିଁ,
୯ ତୁମର ମୋ ସହିତ ସହଭାଗିତା ନାହିଁ ।" ସୀମୋନ ପିତର ଉତ୍ତର
୧୦ ଦେଲେ, "ପ୍ରଭୋ, ତା'ହେଲେ ମୋର ପାଦ କେବଳ ନୁହେଁ ମୋର
ହସ୍ତ ଓ ମସ୍ତକ ମଧ୍ୟ ଧୋଇ ଦିଅନ୍ତୁ ।" ଯୀଶୁ କହିଲେ, "ଯେ ସ୍ନାନ
କରିଛି ସେତ ସମ୍ପୂର୍ଣ୍ଣରୂପେ ନିର୍ମଳ, ତାର ପାଦ ବ୍ୟତୀତ ଆଉ କିଛି
୧୧ ଧୋଇବାର ଆବଶ୍ୟକ ନାହିଁ । ତୁମେମାନେ ନିର୍ମଳ ଅଛ, ଅବଶ୍ୟ
ସମସ୍ତେ ନୁହଁ ।" ଯୀଶୁ ଜାଣି ସାରିଥିଲେ କିଏ ତାଙ୍କୁ ଶତ୍ରୁ ହସ୍ତରେ
ଧରାଇବ, ଏଣୁ ସେ କହିଲେ, "ତୁମେମାନେ ସମସ୍ତେ ନିର୍ମଳ ନୁହେଁ ।"

୧୨ ସେ ସେମାନଙ୍କର ପାଦ ପ୍ରକ୍ଷାଳନ କରିବା ପରେ ତାଙ୍କର
ବହିଃପୋଷାକ ପୁନର୍ବାର ପରିଧାନ କରି ତାଙ୍କର ଭୋଜନାସନରେ
୧୩ ବସିଲେ । ଯୀଶୁ ପଚାରିଲେ, "ବର୍ତ୍ତମାନ ତୁମ ପାଇଁ ଯାହା କରିଛି
୧୪ ତାହା ବୁଝି ପାରିଲ ତ ? ତୁମେ ମୋତେ ଗୁରୁ ଓ ପ୍ରଭୁ ବୋଲି ଡାକ ;
ଠିକ୍ କରୁଛ, କାରଣ ମୁଁ ସେ । ଯଦି ମୁଁ ତୁମର ପ୍ରଭୁ ଓ ଗୁରୁ ତୁମର

ପାଦ ପ୍ରକ୍ଷାଳନ କରିଛି, ତୁମର ମଧ୍ୟ ପରସ୍ପରର ପାଦ ପ୍ରକ୍ଷାଳନ କରିବା
୧୫ କର୍ତ୍ତବ୍ୟ । ମୁଁ ତୁମ ସମକ୍ଷରେ ଗୋଟିଏ ଆଦର୍ଶ ରଖିଲି ; ମୁଁ ତୁମପାଇଁ
୧୬ ଯାହା କରିଛି, ତାହା ତୁମକୁ ମଧ୍ୟ କରିବାକୁ ହେବ । ସତ୍ୟ କହୁଛି,
କୌଣସି ଦାସ ମୁନିବଠାରୁ ବଡ ନୁହେଁ ; କୌଣସି ବାର୍ତ୍ତାବାହକ ତାର
୧୭ ପ୍ରେରକଠାରୁ ବଡ଼ ନୁହେଁ । ବର୍ତ୍ତମାନ ତୁମେ ଏହି ତଥ୍ୟ ଜାଣିଲ,
୧୮ ଏହାକୁ କାର୍ଯ୍ୟରେ ବିନିଯୋଗ କଲେ ତୁମେ ସୁଖୀ ହେବ । ମୁଁ ତୁମ-
ମାନଙ୍କର ସମସ୍ତଙ୍କ ବିଷୟରେ କହୁନାହିଁ, ମୁଁ ଯେଉଁମାନଙ୍କୁ ମନୋନୀତ
କରିଛି, ସେମାନଙ୍କୁ ଜାଣେ । କିନ୍ତୁ ଧର୍ମଶାସ୍ତ୍ରର ଗୋଟିଏ ଉକ୍ତି ଅଛି,
'ଯେ ମୋ ସହିତ ଭୋଜନ କରେ, ସେ ମୋ ବିରୁଦ୍ଧରେ ଗୋଇଠା
୧୯ ଉଠାଇଛି' ; ଏହାର ସତ୍ୟ ହେବା ଆବଶ୍ୟକ । ଏହା ଘଟିବା ଆଗରୁ
ମୁଁ କହି ଦେଉଛି, ଯେପରି କି ଯେତେବେଳେ ଘଟିବ ତୁମେ ବିଶ୍ୱାସ
୨୦ କରିବ ଯେ, ମୁଁ ସେ, ସେ ମୁଁ । ମୁଁ ସତ୍ୟ କହୁଛି : ଯେ ମୋ ପ୍ରେରିତ
ବ୍ୟକ୍ତିଙ୍କୁ ଗ୍ରହଣ କରେ, ସେ ମୋତେ ଗ୍ରହଣ କରେ, ଯେ ମୋତେ ଗ୍ରହଣ
କରେ, ସେ ମୋର ପ୍ରେରକଙ୍କୁ ଗ୍ରହଣ କରେ ।'

**ତାଙ୍କ ପ୍ରତି ବିଶ୍ୱାସଘାତକତା ହେବା ବିଷୟରେ ଯୀଶୁଙ୍କର ଭବିଷ୍ୟଦ୍‌ବାଣୀ :**

(ମାଥିଉ ୨୬ : ୨୦-୨୫ । ମାର୍କ ୧୪ : ୧୭-୨୧ ।
ଲୂକ ୨୨ : ୨୧-୨୩ ମଧ୍ୟ ପାଠକର ।)

୨୧ ଏହା କହିବା ପରେ ଯୀଶୁଙ୍କର ମନ ବ୍ୟାକୁଳ ହେଲା । ସେ ସ୍ପଷ୍ଟ-
ଭାବରେ ପ୍ରକାଶ କଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ତୁମ ଭିତରୁ
୨୨ ଜଣେ ମୋତେ ଶତ୍ରୁହସ୍ତରେ ଧରାଇବ ।" ଯୀଶୁ କାହାକୁ ଲକ୍ଷ୍ୟ
କରୁଛନ୍ତି ଅନୁମାନ କରି ନ ପାରି ଶିଷ୍ୟମାନେ ପରସ୍ପରକୁ ଚାହିଁଲେ ।
୨୩ ଶିଷ୍ୟମାନଙ୍କ ମଧ୍ୟରୁ ଯୀଶୁ ଜଣକୁ ଅଧିକ ପ୍ରେମ କରୁଥିଲେ । ସେ

୨୪ ପାଖରେ ବସି ତାହାଙ୍କ ଅଡ଼କୁ ଢଳି ଥିଲେ । ଶିମୋନ ପିତର ତାଙ୍କୁ
୨୫ ଠାରି କରି କହିଲେ, "ସେ କାହାକୁ ଲକ୍ଷ୍ୟ କରୁଛନ୍ତି ପଚାର ।" ସେ
ସେହିପରି ଢଳିଥିବା ଅବସ୍ଥାରେ ପଛେଇ ଯାଇ ପଚାରିଲେ, "ସେ
୨୬ କିଏ ପ୍ରଭୁ ?" ଯୀଶୁ ଉତ୍ତର ଦେଲେ, "ମୁଁ ରୋଟିକୁ ପାତ୍ରରେ ବୁଡ଼ାଇ
ଯାହାକୁ ଦେବି, ସେ ସେହି ବ୍ୟକ୍ତି । ତା'ପରେ ଯୀଶୁ ରୋଟି ବୁଡ଼ାଇ
୨୭ ଶିମୋନ ଇଷ୍କରିୟୋଥ ପୁତ୍ର ଯିହୁଦାକୁ ଦେଲେ । ରୋଟିଖଣ୍ଡକ
ଗ୍ରହଣ କରିବାକ୍ଷଣି ଯିହୁଦାର ହୃଦୟରେ ଶୟତାନ ପ୍ରବେଶ କଲା
୨୮ ଯୀଶୁ ତାଙ୍କୁ କହିଲେ, "ଯାହା କରିବ, ଶୀଘ୍ର କର ।" ଯୀଶୁ ତାଙ୍କୁ
ଯାହା କହିଲେ, ତାର ଉଦ୍ଦେଶ୍ୟ ଭୋଜନ କରୁଥିବା ଲୋକମାନଙ୍କ
୨୯ ମଧ୍ୟରୁ କେହି ଜାଣି ପାରିଲେ ନାହିଁ । ଯିହୁଦାଙ୍କୁ ସେମାନଙ୍କର କୋଠ-
ଧନର ଭାର ଦିଆଯାଇ ଥିବାରୁ କେତେକ ଶିଷ୍ୟ ମନେ କଲେ ଯେ,
ଯୀଶୁ ତାଙ୍କୁ ପର୍ବ ନିମନ୍ତେ ଯାହା ଯାହା ଆବଶ୍ୟକ ସେ ସବୁ
କିଣିବା ପାଇଁ କହୁଛନ୍ତି ବା ଗରିବମାନଙ୍କୁ କିଛି ଦାନ ଦେବାକୁ
୩୦ କହୁଛନ୍ତି । ଯିହୁଦା ରୋଟି ଗ୍ରହଣ କରିବାକ୍ଷଣି ବାହାରକୁ ଚାଲିଗଲା ।
ସେତେବେଳେ ରାତ୍ରି ।

## ନୂତନ ଆଜ୍ଞା :

୩୧ ଯିହୁଦା ଚାଲି ଯିବା ପରେ ଯୀଶୁ କହିଲେ, "ବର୍ତ୍ତମାନ ମନୁଷ୍ୟ
ପୁତ୍ରଙ୍କର ମହିମା ପ୍ରକାଶ ପାଇଛି, ବର୍ତ୍ତମାନ ତାଙ୍କ ଦ୍ୱାରା ଈଶ୍ୱରଙ୍କର
୩୨ ମହିମା ପ୍ରକାଶ ପାଇଛି । ଯଦି ତାହା ଦ୍ୱାରା ଈଶ୍ୱରଙ୍କର ମହିମା ପ୍ରକାଶ
ପାଇଛି, ତେବେ ଈଶ୍ୱର ନିଜଠାରେ ମନୁଷ୍ୟ ପୁତ୍ରମାନଙ୍କ ମହିମା
୩୩ ପ୍ରକାଶ କରିବେ, ସେ ତାହା ଏହିକ୍ଷଣି ପ୍ରକାଶ କରିବେ । ବତ୍ସଗଣ !
ଆଉ ବେଶୀ ସମୟ ମୁଁ ତୁମ ସଙ୍ଗରେ ରହିବ ନାହିଁ । ତୁମେ ମୋତ
ଅନୁସନ୍ଧାନ କରିବ, କିନ୍ତୁ ମୁଁ ଯାହା ଯିହୁଦୀମାନଙ୍କୁ କହିଥିଲି, ତାହା
ତୁମକୁ ବର୍ତ୍ତମାନ କହୁଛି, ମୁଁ ଯେଉଁ ସ୍ଥାନକୁ ଯାଉଛି ସେଠାକୁ ତୁମେ
୩୪ ଯାଇ ପାରିବ ନାହିଁ । ମୁଁ ତୁମକୁ ଗୋଟିଏ ନୂଆ ଆଜ୍ଞା ଦେଉଛି,

ପରସ୍ପରକୁ ପ୍ରେମ କର । ଯେପରି ମୁଁ ତୁମକୁ ପ୍ରେମ କରିଛି ସେପରି
୩୫ ପରସ୍ପରକୁ ପ୍ରେମ କରିବା ଆବଶ୍ୟକ । ଯଦି ତୁମମାନଙ୍କର ମଧ୍ୟରେ ପରସ୍ପର
ପ୍ରତି ପ୍ରେମ ଥାଏ, ତେବେ ସମସ୍ତେ ଜାଣିବେ ଯେ, ତୁମେମାନେ ମୋର
ଶିଷ୍ୟ ।"

## ପିତରଙ୍କର ଅସ୍ୱୀକାର ସମ୍ପର୍କରେ ଯୀଶୁଙ୍କର ଭବିଷ୍ୟଦ୍-ବାଣୀ :

(ମାଥିଉ ୨୬ : ୩୧-୩୫ । ମାର୍କ ୧୪ : ୨୭-୩୧ । ଲୂକ
୨୨ : ୩୧-୩୪ ମଧ୍ୟ ପାଠକର ।)

୩୬ ଶିମୋନ ପିତର ଯୀଶୁଙ୍କୁ ପ୍ରଶ୍ନ କଲେ, "ପ୍ରଭୁ, ଆପଣ କୁଆଡ଼େ
ଯାଉଛନ୍ତି ?" ଯୀଶୁ ଉତ୍ତର ଦେଲେ, "ମୁଁ ଯେଉଁ ସ୍ଥାନକୁ ଯାଉଛି,
ସେଠାକୁ ତୁମେ ବର୍ତ୍ତମାନ ମୋର ପଶ୍ଚାଦ୍‌ଗମନ କରି ପାରିବ ନାହିଁ, କିନ୍ତୁ
୩୭ ପରେ କରିବ ।" ପିତର ପଚାରିଲେ, "ପ୍ରଭୁ, ମୁଁ କାହିଁକି ବର୍ତ୍ତମାନ
ଆପଣଙ୍କର ପଶ୍ଚାଦ୍‌ଗମନ କରି ପାରିବି ନାହିଁ ? ମୁଁ ଆପଣଙ୍କ ନିମନ୍ତେ
୩୮ ପ୍ରାଣ ମୁଦ୍ଧା ଦେବାକୁ ପ୍ରସ୍ତୁତ ।" ଯୀଶୁ ଉତ୍ତର ଦେଲେ, "ସତେ
କଅଣ ତୁମେ ମୋ ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ? ମୁଁ ତୁମକୁ ସତ୍ୟ
କହୁଛି, କୁକୁଡ଼ା ଡାକିବା ପୂର୍ବେ ତୁମେ ତିନି ଥର କହିବ ଯେ, ତୁମେ
ମୋତେ ଜାଣ ନାହିଁ ।"

## ଯୀଶୁ ନିଜେ ସ୍ୱର୍ଗସ୍ଥପିତାଙ୍କ ନିକଟକୁ ପଥ :

୧୪ ଯୀଶୁ କହିଲେ, "ତୁମେ ଉଦ୍‌ବିଗ୍ନ ହୁଅ ନାହିଁ । ଈଶ୍ୱରଙ୍କ-
୨ ଠାରେ ବିଶ୍ୱାସ ରଖ, ମୋଠାରେ ମଧ୍ୟ ବିଶ୍ୱାସ ରଖ । ମୋର ପିତାଙ୍କ
ଗୃହରେ ରହିବା ପାଇଁ ବହୁତ ସ୍ଥାନ ଅଛି । ମୁଁ ତୁମ ନିମନ୍ତେ ଗୋଟିଏ
ସ୍ଥାନ ପ୍ରସ୍ତୁତ କରିବାକୁ ଯାଉଛି । ଯଦି ଏହା ସତ୍ୟ ହୋଇ ନଥାନ୍ତା,
୩ ମୁଁ ତୁମକୁ କହି ନଥାନ୍ତି । ମୁଁ ଯାଇ ତୁମ ପାଇଁ ଗୋଟିଏ ସ୍ଥାନ ପ୍ରସ୍ତୁତ

କରିବା ପରେ ଫେରି ଆସି ତୁମମାନଙ୍କୁ ମୋ ନିକଟକୁ ନେଇ ଯିବି,
୪ ତା'ହେଲେ ମୁଁ ଯେଉଁଠାରେ, ତୁମେ ସେଠାରେ ରହିବ । ମୁଁ ଯେଉଁ
ଠାକୁ ଯାଉଛି, ସେଠାରେ କିପରି ପହଞ୍ଚିବାକୁ ହେବ ତୁମେମାନେ
୫ ଜାଣ ।" ଥୋମା ଯୀଶୁଙ୍କୁ କହିଲେ, "ପ୍ରଭୁ, ଆପଣ କେଉଁଠାକୁ
୬ ଯାଉଛନ୍ତି ଆମେ ତ ଜାଣିନାହୁଁ । ସେଠାରେ ପହଞ୍ଚିବାର ମାର୍ଗ ଜାଣିବୁ
କିପରି ?" ଯୀଶୁ ଉତ୍ତର ଦେଲେ, "ମୁଁ ପଥ, ସତ୍ୟ ଓ ଜୀବନ;
କୌଣସି ବ୍ୟକ୍ତି ମୋ ଦେଇ ନ ଗଲେ, ପିତାଙ୍କ ନିକଟରେ ପହଞ୍ଚି ପାରିବ
ନାହିଁ । ଯଦି ତୁମେ ମୋତେ ଜାଣିଥାନ୍ତ, ତେବେ ମୋର ପିତାଙ୍କୁ
୭ ମଧ୍ୟ ଜାଣିଥାନ୍ତ । ବର୍ତ୍ତମାନଠାରୁ ତୁମେ ମୋତେ ଜାଣିଛ, ଏବଂ ତାଙ୍କୁ
ଦେଖିଛ ।"

୮ ଫିଲିପ ତାଙ୍କୁ କହିଲେ, "ପ୍ରଭୁ ପିତାଙ୍କୁ ଦର୍ଶନ କରାଅନ୍ତୁ, ଆମେ
୯ ସେତିକି କେବଳ ଚାହୁଁଛୁ ।" ଯୀଶୁ ଉତ୍ତର ଦେଲେ, "ଏତେ କାଳ
ମୁଁ ତୁମମାନଙ୍କ ସଙ୍ଗରେ ରହିଲି; ତଥାପି ତୁମେ ମୋତେ ଜାଣି
ପାରିଲ ନାହିଁ ଫିଲିପ ? ଯେ ମୋତେ ଦେଖିଛି, ସେ ପିତାଙ୍କୁ ଦେଖିଛି ।
୧୦ ତା'ହେଲେ ପିତାଙ୍କୁ ଦର୍ଶନ କରାଅ ବୋଲି କାହିଁକି କୁହ ? ଫିଲିପ,
ତୁମେ କଅଣ ବିଶ୍ୱାସ କର ନାହିଁ ଯେ, ମୁଁ ପିତାଙ୍କଠାରେ ଓ ପିତା
ମୋଠାରେ ବିଦ୍ୟମାନ ? ମୁଁ ଯାହା ତୁମମାନଙ୍କୁ କହେ, ତାହା ମୋର
ଉକ୍ତି ନୁହେଁ । ଯେଉଁ ପିତା ମୋଠାରେ ବିଦ୍ୟମାନ, ସେ ତାଙ୍କର ନିଜ
୧୧ କାର୍ଯ୍ୟ କରନ୍ତି । ମୋ କଥାରେ ବିଶ୍ୱାସ କର ଯେ, ମୁଁ ପିତାଙ୍କଠାରେ
ଓ ପିତା ମୋଠାରେ ବିଦ୍ୟମାନ । ନଚେତ୍ ଏହି କାର୍ଯ୍ୟଗୁଡ଼ିକର ହେତୁ
୧୨ ମୋଠାରେ ବିଶ୍ୱାସ କର । ମୁଁ ତୁମକୁ ସତ୍ୟ କହୁଛି, ଯେ କୌଣସି
ବ୍ୟକ୍ତି ମୋଠାରେ ବିଶ୍ୱାସ କରେ, ମୁଁ ଯେଉଁ କାର୍ଯ୍ୟ କରୁଛି ସେ ତାହା
କରିପାରିବ । ହଁ, ସେ ତା'ଠାରୁ ବଡ଼ ବଡ଼ କାର୍ଯ୍ୟମାନ କରି ପାରିବ,
୧୩ କାରଣ ମୁଁ ପିତାଙ୍କ ନିକଟକୁ ଯାଉଛି । ତୁମେମାନେ ମୋ ନାମରେ
ଯାହା ମାଗିବ ତାହା କରିବି, ଯେପରି କି ପିତାଙ୍କର ମହିମା ପୁତ୍ରଙ୍କ

୧୪ ଦ୍ୱାରା ପ୍ରକାଶିତ ହେବ । ଯଦି ତୁମ୍ଭେମାନେ ମୋ ନାମରେ ମୋତେ
କିଛି ମାଗିବ, ମୁଁ ତାହା କରିବ ।"

## ପବିତ୍ରାତ୍ମାଙ୍କ ବିଷୟରେ ପ୍ରତିଜ୍ଞା

୧୫ "ଯଦି ତୁମ୍ଭେ ମୋତେ ପ୍ରେମ କରୁଅଛ, ତେବେ ମୋର ଆଜ୍ଞା-
୧୬ ଗୁଡ଼ିକ ପାଳନ କରିବ । ମୁଁ ପିତାଙ୍କୁ ନିବେଦନ କରିବି ଯେ, ସେ ତୁମ୍ଭ
୧୭ ସହିତ ଚିରଦିନ ରହିବା ପାଇଁ ଆଉ ଜଣେ ସହାୟକଙ୍କୁ ଦେବେ । ସେ
ସତ୍ୟର-ଆତ୍ମା, ଜଗତ ତାଙ୍କୁ ଗ୍ରହଣ କରି ପାରିବ ନାହିଁ, କାରଣ ତାହା
ତାଙ୍କୁ ଦେଖେ ନାହିଁ କି ଜାଣେ ନାହିଁ । କିନ୍ତୁ ତୁମ୍ଭେମାନେ ତାଙ୍କୁ ଜାଣ,
କାରଣ ସେ ତୁମ୍ଭର ସହବର୍ତ୍ତୀ, ତୁମ୍ଭମାନଙ୍କ ମଧ୍ୟରେ ବାସକରନ୍ତି ।

୧୮ "ମୁଁ ତୁମ୍ଭମାନଙ୍କୁ ଅନାଥ କରି ଛାଡ଼ି ଯିବି ନାହିଁ, ମୁଁ ତୁମ୍ଭମାନଙ୍କ
୧୯ ନିକଟକୁ ଫେରି ଆସିବି । ଅଳ୍ପ ସମୟ ପରେ ଜଗତ ଆଉ ମୋତେ
ଦେଖି ପାରିବ ନାହିଁ, କିନ୍ତୁ ତୁମ୍ଭେମାନେ ଦେଖିବ, ମୁଁ ଜୀବିତ, ଅତଏବ
୨୦ ତୁମ୍ଭେମାନେ ମଧ୍ୟ ଜୀବିତ ହେବ । ଯେତେବେଳେ ସେହି ଦିନ ଆସିବ,
ତୁମ୍ଭେ ଜାଣିବ ଯେ, ମୁଁ ପିତାଙ୍କଠାରେ, ତୁମ୍ଭେମାନେ ମୋଠାରେ ଓ
ମୁଁ ତୁମ୍ଭଠାରେ ବିଦ୍ୟମାନ ।

୨୧ "ଯେଉଁ ବ୍ୟକ୍ତି ମୋର ଆଜ୍ଞାଗୁଡ଼ିକୁ ଗ୍ରହଣ କରି ପାଳନ କରେ,
ସେ ମୋତେ ପ୍ରେମ କରେ । ଯେଉଁ ବ୍ୟକ୍ତି ମୋତେ ପ୍ରେମ କରେ,
ତାହାକୁ ମୋର ପିତା ପ୍ରେମ କରନ୍ତି । ମୁଁ ମଧ୍ୟ ତାହାକୁ ପ୍ରେମ କରି
୨୨ ତାହାଠାରେ ନିଜକୁ ପ୍ରକାଶ କରିବି ।" ଯିହୂଦା (ଯେ ଇଷ୍କରିୟୋଥ
ନୁହେଁ), ସେ କହିଲେ, "ପ୍ରଭୁ, କଅଣ ହେଲା ଯେ, ଆପଣ ଜଗତ
ନିକଟରେ ନିଜକୁ ପ୍ରକାଶ ନ କରି କେବଳ ଆମଠାରେ ପ୍ରକାଶ କରିବାକୁ
୨୩ ଯାଉଛନ୍ତି ?" ଯୀଶୁ ଉତ୍ତର ଦେଲେ, "ଯେ ମୋତେ ପ୍ରେମ କରେ, ସେ
ମୋର ଶିକ୍ଷା ମାନିବ । ତାହାକୁ ମୋର ପିତା ପ୍ରେମ କରିବେ ଏବଂ ମୁଁ
ଓ ମୋର ପିତା ତାହା ନିକଟକୁ ଆସି ତାହା ସହିତ ରହିବା ।

୨୪ ଯେଉଁ ବ୍ୟକ୍ତି ମୋତେ ପ୍ରେମ କରେ ନାହିଁ, ସେ ମୋର ଶିକ୍ଷାଗୁଡ଼ିକୁ ପାଳନ କରେ ନାହିଁ । ତୁମେମାନେ ଯେଉଁ ଶିକ୍ଷା ଶୁଣ, ତାହା ମୋର ନୁହେଁ, ଯେଉଁ ପିତା ମୋତେ ପ୍ରେରଣ କରିଛନ୍ତି ତାଙ୍କର ।

୨୫,୨୬ "ମୁଁ ତୁମ ସହିତ ଥିବାବେଳେ ଏହା କହୁଛି, ପିତା ମୋର ନାମରେ ତୁମ ନିକଟକୁ ସହାୟକଙ୍କୁ, ସେହି ପବିତ୍ରାତ୍ମାଙ୍କୁ ପଠାଇବେ । ସେ ତୁମମାନଙ୍କୁ ପ୍ରତ୍ୟେକ ବିଷୟ ଶିକ୍ଷା ଦେବେ, ମୁଁ ଯାହା ଯାହା ତୁମକୁ କହିଛି ସେ ସବୁକୁ ସେ ତୁମକୁ ସ୍ମରଣ କରାଇ ଦେବେ ।

୨୭ "ମୁଁ ତୁମକୁ ଶାନ୍ତି ଦାନ କରି ଯାଉଛି, ମୁଁ ମୋ ନିଜର ଶାନ୍ତି ତୁମକୁ ଦେଉଛି । ଜଗତ ଯେପରି ଶାନ୍ତି ଦିଏ, ମୁଁ ତୁମକୁ ସେପରି ଶାନ୍ତି ଦେଉନାହିଁ । ତୁମେମାନେ ବ୍ୟସ୍ତ ଏବଂ ବିଚଳିତ ହୁଅ ନାହିଁ । ଭୟଭୀତ
୨୮ ହୁଅ ନାହିଁ, ମୁଁ ଯାଉଛି, କିନ୍ତୁ ପୁଣି ଥରେ ତୁମ ନିକଟକୁ ଫେରିବି, ମୁଁ ଏହା କହିବାର ତୁମେ ଶୁଣିଛ, ଯଦି ତୁମେମାନେ ମୋତେ ପ୍ରେମ କରୁଥାଅ, ତୁମେ ଆନନ୍ଦିତ ହେବ ଯେ, ମୁଁ ପିତାଙ୍କ ନିକଟକୁ ଫେରି
୨୯ ଯାଉଛି, କାରଣ ସେ ମୋଠାରୁ ମହାନ । ବର୍ତ୍ତମାନ ମୁଁ ତୁମକୁ ଏସବୁ ଘଟିବାର ପୂର୍ବେ କହୁଛି, ଯେପରି କି ସେ ସବୁ ଘଟିବା ବେଳେ ତୁମେ-
୩୦ ମାନେ ବିଶ୍ୱାସ କରିବ । ମୁଁ ଅଧିକ ବେଶୀ ସମୟ ତୁମ ସହିତ ଆଳାପ କରି ପାରିବି ନାହିଁ, କାରଣ ଏ ଜଗତର ଅଧିପତି ଆସୁଛି । ମୋ
୩୧ ଉପରେ ତାର କର୍ତ୍ତୃତ୍ୱ ନାହିଁ, କିନ୍ତୁ ଜଗତକୁ ଜାଣିବାକୁ ପଡ଼ିବ ଯେ, ମୁଁ ପିତାଙ୍କୁ ପ୍ରେମ କରେ । ସେ ମୋତେ ଯେଉଁ ଆଦେଶ ଦିଅନ୍ତି, ମୁଁ ତାହା କରେ । ଆସ, ଆମେ ଏ ସ୍ଥାନରୁ ଚାଲିଯିବା ।"

**ଯୀଶୁ ପ୍ରକୃତ ଦ୍ରାକ୍ଷାଲତା :**

୧୫,୧ "ମୁଁ ପ୍ରକୃତ ଦ୍ରାକ୍ଷାଲତା ଓ ମୋର ପିତା କୃଷକ । ମୋଠାରେ ଥିବା ପ୍ରତ୍ୟେକ ଅଫଳନ୍ତ ଶାଖାକୁ ସେ କାଟି ପକାନ୍ତି ଓ ପ୍ରତ୍ୟେକ ଫଳନ୍ତ ଶାଖାକୁ ଛାଣ୍ଟି ଦେଇ ସଫା କରନ୍ତି, ଯେପରି କି ତାହା ଅଧିକ ଫଳବତୀ

୩ ହେବ । ମୁଁ ତୁମକୁ ଯେଉଁ ସବୁ ଶିକ୍ଷା ଦେଇଛି, ତଦ୍ୱାରା ତୁମେମାନେ
୪ ପରିଷ୍କୃତ ହୋଇ ସାରିଛ । ମୋର ସହିତ ସଂଯୁକ୍ତ ହୋଇ ରହ, ମୁଁ
ମଧ୍ୟ ତୁମ ସହିତ ସଂଯୁକ୍ତ ହୋଇ ରହିବି । ଶାଖା ନିଜେ ଫଳ ଧାରଣ
କରିପାରେ ନାହିଁ, ତାହା ଦ୍ରାକ୍ଷାଲତାରେ ରହିଲେ କେବଳ ଫଳ
ଧାରଣ କରିପାରେ । ଠିକ୍ ସେହିପରି ତୁମେମାନେ ମୋଠାରେ ସଂଯୁକ୍ତ
ହୋଇ ନ ରହିଲେ ଫଳ ଧାରଣ କରିପାରିବ ନାହିଁ ।

୫ "ମୁଁ ଦ୍ରାକ୍ଷାଲତା, ତୁମେମାନେ ଶାଖା, ଯେଉଁ ବ୍ୟକ୍ତି ମୋଠାରେ
ରହେ ଓ ଯାହାଠାରେ ମୁଁ ରହେ, ସେ ବହୁତ ଫଳ ଧାରଣ କରେ ;
୬ କାରଣ ମୋ ବ୍ୟତୀତ ତୁମେମାନେ କିଛି କରିପାରିବ ନାହିଁ । ଯେଉଁ
ବ୍ୟକ୍ତି ମୋଠାରେ ରହି ନ ଥାଏ, ତାକୁ ଗୋଟିଏ ଅକାମୀ ଶାଖା ପରି
ବାହାର କରି ଫୋପାଡ଼ି ଦିଆଯାଏ ଓ ତାହା ଶୁଖିଯାଏ ; ଏପରି ଶାଖା-
ଗୁଡ଼ିକୁ ଲୋକେ ଏକତ୍ର କରି ଅଗ୍ନିରେ ନିକ୍ଷେପ କରନ୍ତି ଓ ସେସବୁ
୭ ପୋଡ଼ିଯାଏ । ଯଦି ତୁମେ ମୋଠାରେ ରୁହ ଓ ମୋର ଉକ୍ତିଗୁଡ଼ିକ ତୁମ
ଠାରେ ରହେ, ତେବେ ତୁମେ ଯାହା ଇଚ୍ଛା କର ମାଗ, ତାହା ପାଇବ ।
୮ ତୁମେମାନେ ବହୁତ ଫଳ ଫଳିଲେ ମୋର ପିତାଙ୍କର ମହିମା ପ୍ରକାଶିତ
୯ ହେବ ଓ ତୁମମାନଙ୍କର ଶିଷ୍ୟତ୍ୱର ପ୍ରମାଣ ମିଳିବ । ମୋର ପିତା
ମୋତେ ପ୍ରେମ କରିବା ପରି ମୁଁ ତୁମମାନଙ୍କୁ ପ୍ରେମ କରେ । ମୋର
୧୦ ପ୍ରେମରେ ରୁହ । ଯଦି ମୋର ଆଜ୍ଞାସମୂହ ପାଳନ କର, ତେବେ
ମୋର ପ୍ରେମରେ ରହିପାରିବ । ମୁଁ ସେହିପରି ମୋର ପିତାଙ୍କର ଆଜ୍ଞା-
ଗୁଡ଼ିକୁ ପାଳନ କରି ତାଙ୍କର ପ୍ରେମରେ ରହିଛି ।

୧୧ "ମୋର ଏସବୁ କହିବାର ଉଦ୍ଦେଶ୍ୟ ଏହି ଯେ, ମୋର ଆନନ୍ଦ
ଅନ୍ତରରେ ବିରାଜିତ ହୋଇ ତୁମମାନଙ୍କର ଆନନ୍ଦକୁ ପରିପୂର୍ଣ୍ଣ କରୁ
୧୨ ଏହି ମୋର ଆଜ୍ଞା ' ମୁଁ ତୁମକୁ ପ୍ରେମ କରିବା ପରି ପରସ୍ପରକୁ ପ୍ରେମ
୧୩ କର । ଜଣେ ବ୍ୟକ୍ତିର ନିଜର ବନ୍ଧୁମାନଙ୍କ ନିମନ୍ତେ ପ୍ରାଣଦାନ କରିବା
୧୪ ଅପେକ୍ଷା ଉତ୍କୃଷ୍ଟ ପ୍ରେମ ନାହିଁ । ମୁଁ ତୁମକୁ ଯାହା ଆଦେଶ ଦିଏ,

ଯଦି ତାହା ତୁମେ ପାଳନ କର, ତେବେ ତୁମେମାନେ ମୋର ବନ୍ଧୁ ।
୧୫ ତୁମକୁ ମୁଁ ଆଉ ଦାସ ବୋଲି କହିବି ନାହିଁ, କାରଣ ଦାସ ଜାଣେ ନାହିଁ
ତାର ମୁନିବ କଅଣ କରେ । ବରଂ ମୁଁ ତୁମକୁ ବନ୍ଧୁ କହେ, କାରଣ
ମୁଁ ମୋର ପିତାଙ୍କଠାରୁ ଯାହା ଯାହା ଶୁଣିଛି, ସେ ସବୁ ତୁମଠାରେ
୧୬ ପ୍ରକାଶ କରିଛି । ତୁମେମାନେ ମୋତେ ମନୋନୀତ କର ନାହିଁ, ବରଂ
ମୁଁ ତୁମମାନଙ୍କୁ ମନୋନୀତ କରିଛି, ମୁଁ ତୁମମାନଙ୍କୁ ନିଯୁକ୍ତ କରିଛି,
ଯେପରି ତୁମେମାନେ ଯାଇ ବହୁତ ଫଳ ଧାରଣ କରିବ । ତୁମର ସେ
ସବୁ ଫଳ ଚିରସ୍ଥାୟୀ ହେଉ । ତା'ହେଲେ ମୋର ନାମରେ ଯାହା
୧୭ କିଛି ମାଗିବ, ତାହା ପିତା ତୁମମାନଙ୍କୁ ଦେବେ । ମୋର ତୁମମାନଙ୍କର
ପ୍ରତି ଏହି ଆଦେଶ , ପରସ୍ପରକୁ ପ୍ରେମ କର ।

## ଜଗତର ଘୃଣା

୧୮ "ଯଦି ଜଗତ ତୁମମାନଙ୍କୁ ଘୃଣା କରେ, ମନେ ରଖ, ସେ
୧୯ ମୋତେ ପ୍ରଥମେ ଘୃଣା କରିଛି । ଯଦି ତୁମେମାନେ ଏ ଜଗତର
ହୋଇଥାଆନ୍ତ, ତେବେ ଜଗତ ତୁମକୁ ନିଜପରି ପ୍ରେମ କରିଥାଆନ୍ତା ;
କିନ୍ତୁ ମୁଁ ତୁମକୁ ଏ ଜଗତ ମଧ୍ୟରୁ ମନୋନୀତ କରିଛି, ତୁମେ ଆଉ
୨୦ ତାର ଅଧୀନ ନୁହଁ ; ତେଣୁ ଜଗତ ତୁମକୁ ଘୃଣା କରେ । ମୁଁ
ତୁମମାନଙ୍କୁ ଯାହା କହିଥିଲି ସ୍ମରଣ କର, 'କୌଣସି ଦାସ ତାର
ମୁନିବଠାରୁ ଶ୍ରେଷ୍ଠ ନୁହେଁ' । ସେମାନେ ଯଦି ମୋତେ ତାଡନା
କରିଛନ୍ତି, ତୁମମାନଙ୍କୁ ମଧ୍ୟ ତାଡନା କରିବେ ଓ ସେମାନେ ମୋର
ଉକ୍ତି ସମସ୍ତ ଯଦି ପାଳନ କରିଛନ୍ତି, ତୁମର ଉକ୍ତି ମଧ୍ୟ ପାଳନ କରିବେ,
୨୧ କିନ୍ତୁ ସେମାନେ ଏସବୁ ତୁମପାଇଁ କରିବେ, କାରଣ ତୁମେମାନେ
ମୋର । ଯେ ମୋତେ ପ୍ରେରଣ କରିଛନ୍ତି, ତାଙ୍କୁ ସେମାନେ ଜାଣନ୍ତି
୨୨ ନାହିଁ । ମୁଁ ଯଦି ଆସି ସେମାନଙ୍କୁ ଶିକ୍ଷା ଦେଇ ନଥାନ୍ତି, ତେବେ
ସେମାନଙ୍କର ପାପ ଧର୍ତ୍ତବ୍ୟ ହୋଇ ଥାନ୍ତା, କିନ୍ତୁ ବର୍ତ୍ତମାନ
ସେମାନଙ୍କର ନିଜ ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବାର ଉପାୟ ନାହିଁ ।

୨୩ ଯେ ମୋତେ ଘୃଣା କରେ, ସେ ମୋର ପିତାଙ୍କୁ ମଧ୍ୟ ଘୃଣା କରେ ।
୨୪ ଯେଉଁ ସମସ୍ତ କାର୍ଯ୍ୟ ଅନ୍ୟ କେହି କରିନାହାନ୍ତି ତାହା ସବୁ ମୁଁ
ସେମାନଙ୍କ ମଧ୍ୟରେ ସାଧନ କରି ନ ଥିଲେ ସେମାନଙ୍କର ପାପ ଧର୍ତ୍ତବ୍ୟ
ହୋଇ ନ ଥାନ୍ତା; କିନ୍ତୁ ବର୍ତ୍ତମାନ ମୋର କାର୍ଯ୍ୟସବୁ ସେମାନେ
ଦେଖିଛନ୍ତି, ସେମାନେ ମୋତେ ଓ ମୋର ପିତା ଉଭୟଙ୍କୁ ଘୃଣା କରନ୍ତି ।
୨୫ ଯାହା ହେଉ, ଏହା ଘଟିବା ଆବଶ୍ୟକ, ତଦ୍ଦ୍ୱାରା ବ୍ୟବସ୍ଥାରେ ଲିଖିତ
ଏହି ଉକ୍ତିର ସତ୍ୟତା ପ୍ରମାଣିତ ହେଲା, 'ସେମାନେ କୌଣସି କାରଣ
ନ ଥାଇ ମୋତେ ଘୃଣା କଲେ' ।

୨୬ "ସହାୟକ ଆସିବେ—ସେ ସେହି ସତ୍ୟର ଆତ୍ମା, ଯେ
ପିତାଙ୍କଠାରୁ ଆସନ୍ତି । ମୁଁ ତାଙ୍କୁ ପିତାଙ୍କଠାରୁ ତୁମ ନିକଟକୁ ପ୍ରେରଣ
୨୭ କରିବି, ସେ ମୋ ବିଷୟରେ କହିବେ । ତୁମେମାନେ ମଧ୍ୟ ମୋ
ବିଷୟରେ କହିବ, କାରଣ ତୁମେମାନେ ଆଦ୍ୟରୁ ମୋର ସହିତ
ରହିଛ ।"

୧୬ "ତୁମର ଯେପରି ପତନ ନ ଘଟେ, ସେଥିପାଇଁ ତୁମକୁ ମୁଁ ଏ
୨ ସମସ୍ତ କହୁଛି । ଲୋକେ ତୁମକୁ ସମାଜଚ୍ୟୁତ କରିବେ । ଏପରି ସମୟ
ଆସିବ, ଯେତେବେଳେ ତୁମକୁ ହତ କରିବା ବ୍ୟକ୍ତି ମନେ କରିବ ଯେ,
୩ ସେ ତଦ୍ଦ୍ୱାରା ଗୋଟିଏ ପୁଣ୍ୟକାର୍ଯ୍ୟ କରୁଛି । ସେମାନେ ପିତାଙ୍କୁ ବା
୪ ମୋତେ ଜାଣି ନଥିବାରୁ ଏସବୁ କରିବେ । ଏ ସମସ୍ତ ତୁମକୁ କହି
ଦେଉଛି, ଯେପରି କି ସେମାନେ ଏସବୁ କରିବାର ସମୟ ପହଞ୍ଚିଲେ
ତୁମେମାନେ ସ୍ମରଣ କରିବ ଯେ, ଏହା ମୁଁ କହିଥିଲି ।

**ପବିତ୍ରଆତ୍ମାଙ୍କର କାର୍ଯ୍ୟ :**

"ମୁଁ ଆରମ୍ଭରେ ଏସବୁ ତୁମକୁ କହିଲି ନାହିଁ । କାରଣ ମୁଁ
୫ ତୁମମାନଙ୍କର ସହିତ ରହିଥିଲି । କିନ୍ତୁ ବର୍ତ୍ତମାନ ମୋର ପ୍ରେରକଙ୍କ

ନିକଟକୁ ଚାଲିଯାଉଛି ; ତଥାପି ତୁମ ମଧ୍ୟରୁ କେହି ମୋତେ ପ୍ରଶ୍ନ
୬ କରୁନାହାନ୍ତି, ତୁମେ କୁଆଡେ ଯାଉଛ ? ବର୍ତ୍ତମାନ ଏହା ତୁମକୁ କହିବାରୁ
୭ ତୁମମାନଙ୍କର ହୃଦୟ ଦୁଃଖରେ ପୂର୍ଣ୍ଣ ହେଉଛି । କିନ୍ତୁ ମୁଁ ତୁମକୁ ସତ
କହୁଛି, ତୁମମାନଙ୍କର ମଙ୍ଗଳ ପାଇଁ ମୁଁ ତୁମକୁ ଛାଡ଼ି ଯାଉଛି । ମୁଁ
ନ ଗଲେ ସହାୟକ ତୁମ ନିକଟକୁ ଆସିବେ ନାହିଁ । ମୁଁ ଯଦି ଚାଲିଯାଏ,
୮ ତାଙ୍କୁ ତୁମ ନିକଟକୁ ପ୍ରେରଣ କରିବି । ସେ ଯେତେବେଳେ ଆସିବେ,
ସେତେବେଳେ ଜଗତର ଲୋକମାନଙ୍କୁ ପାପ, ଧର୍ମ ଓ ଈଶ୍ବରଙ୍କର
୯ ବିଚାର ବିଷୟ ଜଣାଇ ସେମାନଙ୍କୁ ଦୋଷୀ କରିବେ । ସେମାନେ
ମୋଠାରେ ବିଶ୍ୱାସ ନ କରିବାରୁ ସେ ଦୋଷୀ, ଏହି ହୃଦବୋଧ ସେ
୧୦ ସେମାନଙ୍କୁ ଦେବେ । ତୁମମାନଙ୍କର ଦୃଷ୍ଟିପଥାରୁଢ଼ ହୋଇ ପିତାଙ୍କ
ନିକଟକୁ ମୋର ପ୍ରସ୍ଥାନ ଦ୍ୱାରା ଧାର୍ମିକତାର ବିଷୟରେ ସେମାନଙ୍କର
୧୧ ହୃଦବୋଧ ଜନ୍ମାଇବେ । ସେ ଜଗତର ଅଧିପତିର ଦଣ୍ଡନୀୟ ଅବସ୍ଥା
ପ୍ରଦର୍ଶନ କରାଇ ଈଶ୍ବରଙ୍କର ବିଚାର ବିଷୟରେ ହୃଦବୋଧ
ଜନ୍ମାଇବେ

୧୨ "ତୁମମାନଙ୍କୁ ମୋର ଆହୁରି ଅନେକ ବିଷୟ କହିବାର ଅଛି,
କିନ୍ତୁ ସେ ସମସ୍ତ ଗ୍ରହଣ କରିବା ବର୍ତ୍ତମାନ ତୁମ ପକ୍ଷରେ ସମ୍ଭବ ନୁହେଁ ।
୧୩ କିନ୍ତୁ ଯେତେବେଳେ ସତ୍ୟର ଆତ୍ମା ଆସିବେ, ସେ ତୁମକୁ ସମ୍ପୂର୍ଣ୍ଣ
ସତ୍ୟ ଦିଗରେ ପରିଚାଳନା କରିବେ । ସେ ନିଜେ କିଛି କହିବେ ନାହିଁ,
ସେ ଯାହା ଶୁଣିବେ, ତାହା ବ୍ୟକ୍ତ କରିବେ । ସେ ଆଗାମୀ
୧୪ ବିଷୟଗୁଡ଼ିକ ଜଣାଇବେ । ସେ ମୋତେ ଗୌରବ ଦେବେ, କାରଣ
ମୋର ଯାହା ବକ୍ତବ୍ୟ, ତାହା ସେ ମୋଠାରୁ ଗ୍ରହଣ କରି ତୁମଠାରେ
୧୫ ପ୍ରକାଶିତ କରିବେ । ଯାହା ସବୁ ପିତାଙ୍କର, ସେ ସବୁ ମୋର, ଏଣୁ
ମୁଁ କହେ, ଆତ୍ମା ଯାହା ସବୁ ତୁମଠାରେ ବ୍ୟକ୍ତ କରିବେ, ସେ ସବୁ
ମୋଠାରୁ ନେବେ ।"

**ବିଷାଦ ଓ ଆନନ୍ଦ :**

୧୬ "ଅଳ୍ପ ସମୟ ପରେ ତୁମେମାନେ ମୋତେ ଆଉ ଦେଖିବ ନାହିଁ,
୧୭ ପୁନର୍ବାର ଅଳ୍ପ ସମୟ ପରେ ମୋତେ ଦେଖିବ ।" ତାଙ୍କର କେତେକ
ଶିଷ୍ୟ ପରସ୍ପରକୁ କହିଲେ, "ତାଙ୍କର ଏକଥାର ତାତ୍ପର୍ଯ୍ୟ କଅଣ, 'ଅଳ୍ପ
ସମୟପରେ ତୁମେମାନେ ମୋତେ ଆଉ ଦେଖିବ ନାହିଁ, ପୁନର୍ବାର
ଅଳ୍ପ ସମୟପରେ ମୋତେ ଦେଖିବ ?' ଏହା ବ୍ୟତୀତ ସେ ମଧ୍ୟ କହନ୍ତି,
୧୮ 'ଏହାର କାରଣ, ମୁଁ ପିତାଙ୍କ ନିକଟକୁ ପ୍ରସ୍ଥାନ କରୁଛି ।' ଅଳ୍ପ ସମୟର
୧୯ ଭାବ କଅଣ ? ସେ କଅଣ କହୁଛନ୍ତି ବୁଝି ପାରୁନାହୁଁ ।" ସେମାନେ
ଯେ ତାଙ୍କୁ ପ୍ରଶ୍ନ କରିବାକୁ ଚାହାଁନ୍ତି, ଏହା ଯୀଶୁ ଜାଣି, ଯାଇ କହିଲେ,
"ଅଳ୍ପ ସମୟ ପରେ ତୁମେମାନେ ମୋତେ ଦେଖିବ ନାହିଁ ଓ ଅଳ୍ପ
ସମୟ ପରେ ଦେଖିବ,' ମୋର ଏ ଉକ୍ତି ନେଇ କଅଣ ତୁମମାନଙ୍କ
୨୦ ମଧ୍ୟରେ ଆଲୋଚନା ଚାଲିଛି ? ମୁଁ ତୁମମାନଙ୍କୁ ସତ୍ୟ କହୁଛି,
ତୁମେମାନେ କ୍ରନ୍ଦନ କରିବ, ଶୋକ କରିବ, କିନ୍ତୁ ଜଗତ ଆନନ୍ଦିତ
ହେବ ; ତୁମେମାନେ ଦୁଃଖ କରିବ, କିନ୍ତୁ ତୁମମାନଙ୍କର ସେ ଦୁଃଖ
୨୧ ଆନନ୍ଦରେ ପରିଣତ ହେବ । ନାରୀ ସନ୍ତାନ ପ୍ରସବ କରିବା ବେଳେ
ଦୁଃଖ ପାଏ, କାରଣ ସେତେବେଳେ ତାର ପ୍ରସବ ବେଦନା ହୁଏ ।
ଶିଶୁଟିଏ ଭୂମିଷ୍ଠ ହେବାପରେ ସେ ତାର ବେଦନା ଭୁଲିଯାଏ, କାରଣ
ଶିଶୁଟିଏ ଜଗତରେ ଜନ୍ମଗ୍ରହଣ କରିଥିବାରୁ ସେ ଆନନ୍ଦିତ ହୁଏ ।
୨୨ ସେହିପରି ତୁମେମାନେ ବର୍ତ୍ତମାନ ଦୁଃଖ ପାଉଛ, କିନ୍ତୁ ମୁଁ ପୁନର୍ବାର
ତୁମମାନଙ୍କୁ ସାକ୍ଷାତ କରିବି । ସେତେବେଳେ ତୁମମାନଙ୍କ ହୃଦୟ
ଆନନ୍ଦିତ ହେବ । କେହି ତୁମ ପାଖରୁ ସେହି ଆନନ୍ଦ ନେଇପାରିବ
ନାହିଁ ।

୨୩ "ଯେତେବେଳେ ସେ ଦିନ ପହଞ୍ଚିବ, ତୁମେ ମୋତେ କିଛି
ମାଗିବ ନାହିଁ । ମୁଁ ତୁମକୁ ସତ୍ୟ କହୁଛି, ତୁମେ ମୋ ନାମରେ ପିତାଙ୍କଠାରୁ

୨୪ ଯାହା ମାଗିବ ସେ ଦେବେ । ଏତେବେଳ ଯାଏ ତୁମେ ମୋ, ନାମରେ
କିଛି ମାଗି ନାହିଁ । ମାଗ, ତା, ହେଲେ ପାଇବ, ତୁମର ଆନନ୍ଦ ପୂର୍ଣ୍ଣତା
ପ୍ରାପ୍ତ ହେବ ।

### ଜଗତ ଉପରେ ବିଜୟ :

୨୫ "ମୁଁ ତୁମକୁ ଏ ସବୁ ରୂପକ ଭାଷା ସାହାଯ୍ୟରେ ପ୍ରକାଶ କରିଛି
କିନ୍ତୁ ଯେତେବେଳେ ସେହି ମୁହୂର୍ତ୍ତ ପହଞ୍ଚିବ, ମୁଁ ଆଉ ରୂପକ ଭାଷ
ପ୍ରୟୋଗ କରିବି ନାହିଁ । ମୁଁ ତୁମକୁ ସିଧାସିଧାଭାବରେ ପିତାଙ୍କ
୨୬ ବିଷୟରେ କହିବି । ଯେତେବେଳେ ସେ ଦିନ ପହଞ୍ଚିବ, ତୁମେମାନେ
ମୋ ନାମରେ ମାଗିବ, ମୁଁ କିନ୍ତୁ କହୁ ନାହିଁ ଯେ, ମୁଁ ତୁମମାନଙ୍କ
୨୭ ସପକ୍ଷରେ ପିତାଙ୍କୁ ମାଗିବି; କାରଣ ପିତା ନିଜେ ତୁମକୁ ପ୍ରେମ କରନ୍ତି ।
ତୁମେମାନେ ମୋତେ ପ୍ରେମ କର ଓ ବିଶ୍ୱାସ କର ଯେ, ମୁଁ ପିତାଙ୍କ
୨୮ ନିକଟରୁ ଆସିଛି । ଏଣୁ ସେ ତୁମମାନଙ୍କୁ ପ୍ରେମ କରନ୍ତି । ହଁ, ମୁଁ ପିତାଙ୍କ
ନିକଟରୁ ଜଗତ ମଧ୍ୟକୁ ଆସିଛି, ବର୍ତ୍ତମାନ ମୁଁ ଜଗତ ପରିତ୍ୟାଗ କରି
୨୯ ପିତାଙ୍କ ନିକଟକୁ ଯାଉଛି । ଶିଷ୍ୟମାନେ ତାଙ୍କୁ କହିଲେ, ଦେଖନ୍ତୁ,
ବର୍ତ୍ତମାନ ଆପଣ ଅତ୍ୟନ୍ତ ସରଳଭାବରେ କହୁଛନ୍ତି, ସେଥିରେ କୌଣସି
୩୦ ରୂପକଭାଷା ନାହିଁ । ବର୍ତ୍ତମାନ ଆମେ ଜାଣୁ ଯେ, ଆପଣ ସବୁ ଜାଣନ୍ତି,
କେହି କିଛି ପ୍ରଶ୍ନ କରିବା ଆପଣଙ୍କର ଆବଶ୍ୟକ ନାହିଁ । ଏଥିରୁ ଆମର
୩୧ ବିଶ୍ୱାସ ହୁଏ ଯେ, ଆପଣ ଈଶ୍ୱରଙ୍କଠାରୁ ଆସିଛନ୍ତି । ଯୀଶୁ ସେମାନଙ୍କୁ
ଉତ୍ତର ଦେଲେ, ବର୍ତ୍ତମାନ ତୁମେ ମୋତେ ବିଶ୍ୱାସ କର ? ଏପରି ସମୟ
୩୨ ଉପସ୍ଥିତ ହେବ-ବାସ୍ତବରେ ତାହା ଉପସ୍ଥିତ ହେଲଣି, ଯେତେବେଳେ
ତୁମେମାନେ ଛିନ୍ନଭିନ୍ନ ହୋଇଯିବ, ପ୍ରତ୍ୟେକେ ମୋତେ ଏକାକୀ ଛାଡ଼ି
ଦେଇ ନିଜ ନିଜ ଗୃହକୁ ଚାଲିଯିବ । କିନ୍ତୁ ବାସ୍ତବରେ ମୁଁ ଏକାକୀ
୩୩ ନାହିଁ, ମୋର ପିତା ମୋର ନିକଟରେ । ମୁଁ ଏହା ତୁମକୁ କହୁଛି,
ଯେପରି ତୁମେମାନେ ମୋ ସହିତ ମିଳିତ ହୋଇ ଶାନ୍ତିପ୍ରାପ୍ତ ହେବ ।
ଜଗତ ତୁମକୁ କ୍ଳେଶ ଦେବ, କିନ୍ତୁ ସାହସିକ ହୁଅ, ମୁଁ ଜଗତକୁ ଜୟ
କରିଛି ।"

## ଶିଷ୍ୟମାନଙ୍କ ନିମନ୍ତେ ଯୀଶୁଙ୍କର ପ୍ରାର୍ଥନା :

୧୭ ଏ ସବୁ କହିସାରିବା ପରେ ଯୀଶୁ ସ୍ୱର୍ଗଆଡ଼େ ଊର୍ଦ୍ଧ୍ୱଦୃଷ୍ଟି କରି
କହିଲେ, "ପିତଃ, ସମୟ ପହଞ୍ଚିଛି, ତୁମ ପୁତ୍ରଙ୍କୁ ମହିମାନ୍ୱିତ କର,
୨ ଯେପରିକି ପୁତ୍ର ତୁମକୁ ମହିମାନ୍ୱିତ କରିବେ । କାରଣ ତୁମେ ତାଙ୍କୁ
ସମୁଦାୟ ମାନବ ଉପରେ କର୍ତ୍ତୃତ୍ୱ ପ୍ରଦାନ କରିଛ, ଯେପରି କି ତୁମେ
ତାଙ୍କୁ ଯେଉଁମାନଙ୍କୁ ଦେଇଛ ସେମାନଙ୍କୁ ସମସ୍ତଙ୍କୁ ସେ ଅନନ୍ତ ଜୀବନ
୩ ପ୍ରଦାନ କରି ପାରିବେ । ମନୁଷ୍ୟମାନେ ତୁମକୁ ଅଦ୍ୱିତୀୟ ସତ୍ୟ ଈଶ୍ୱର
ସ୍ୱରୂପେ ଜାଣିବା ଓ ତୁମର ପ୍ରେରିତ ଯୀଶୁ ଖ୍ରୀଷ୍ଟଙ୍କୁ ଜାଣିବାହିଁ ଅନନ୍ତ
୪ ଜୀବନ । ମୁଁ ତୁମର ଗୌରବ ଜଗତରେ ପ୍ରକାଶ କରିଛି, ମୋତେ
୫ ତୁମେ ଯେଉଁ କାର୍ଯ୍ୟ ଦେଇଥିଲ, ତାହା ସାଧନ କରିଛି । ପିତଃ,
ଜଗତ୍ସୃଷ୍ଟିର ପୂର୍ବେ ତୁମ ସହିତ ମୋର ଯେଉଁ ମହିମା ଥିଲା ସେଥିରେ
ବର୍ତ୍ତମାନ ମୋତେ ତୁମ ସମ୍ମୁଖରେ ମହିମାନ୍ୱିତ କର ।

୬ "ଜଗତ ମଧ୍ୟରେ ତୁମେ ଯେଉଁମାନଙ୍କୁ ମୋତେ ଦେଇଛ
ସେମାନଙ୍କଠାରେ ମୁଁ ତୁମକୁ ଜଣାଇଛି । ସେମାନେ ତୁମର ଥିଲେ,
ତୁମେ ସେମାନଙ୍କୁ ମୋତେ ଦେଇଛ । ସେମାନେ ତୁମ ବାଣୀର ବାଧ୍ୟ
୭ ହୋଇଛନ୍ତି । ବର୍ତ୍ତମାନ ସେମାନେ ଜାଣନ୍ତି ଯେ, ତୁମେ ମୋତେ ଯାହା
୮ ଯାହା ଦେଇଛ, ସେ ସବୁ ତୁମଠାରୁ ଆସିଛି । ତୁମେ ମୋତେ ଯେଉଁ
ବାର୍ତ୍ତା ଦେଇଥିଲ, ତାହାକୁ ମୁଁ ସେମାନଙ୍କୁ ଦେଇଛି ଓ ସେମାନେ
ଗ୍ରହଣ କରିଛନ୍ତି; ସେମାନେ ଜାଣନ୍ତି ଯେ, ମୁଁ ପ୍ରକୃତରେ ତୁମଠାରୁ
ଆସିଛି । ସେମାନେ ବିଶ୍ୱାସ କରନ୍ତି ଯେ, ତୁମେ ମୋତେ ପ୍ରେରଣ
କରିଛ ।

୯ "ମୁଁ ସେମାନଙ୍କ ନିମନ୍ତେ ପ୍ରାର୍ଥନା କରେ । ମୁଁ ଜଗତର ପାଇଁ
ପ୍ରାର୍ଥନା କରେ ନାହିଁ । ଯେଉଁମାନଙ୍କୁ ମୋତେ ଦେଇଛ, ସେମାନଙ୍କ
୧୦ ପାଇଁ ପ୍ରାର୍ଥନା କରେ, କାରଣ ସେମାନେ ତୁମର । ମୋର ଯାହା ଅଛି,

ସେ ସବୁ ତୁମର ଓ ତୁମର ଯାହା ଅଛି, ସେ ସବୁ ମୋର ; ସେମାନଙ୍କ
୧୧ ଦ୍ୱାରା ମୋର ମହିମା ପ୍ରକାଶିତ ହେଉଅଛି । ବର୍ତ୍ତମାନ ମୁଁ ତୁମ ନିକଟକୁ
ଯାଉଛି ମୁଁ ଆଉ ଜଗତରେ ନାହିଁ, ମାତ୍ର ସେମାନେ ଜଗତରେ ଅଛନ୍ତି ।
ପବିତ୍ର ପିତା, ତୁମେ ତୁମର ଯେଉଁ ନାମ ମୋତେ ଦେଇଛ, ସେହି
ନାମର ଶକ୍ତିରେ ସେମାନଙ୍କୁ ନିରାପଦରେ ରଖ, ତା'ହେଲେ ତୁମେ ଓ
୧୨ ମୁଁ ଯେପରି ଏକ, ସେପରି ସେମାନେ ଏକ ହୋଇ ପାରିବେ । ମୁଁ
ସେମାନଙ୍କ ସହିତ ଥିବା ବେଳେ ତୁମେ ଯେଉଁ ନାମ ମୋତେ
ଦେଇଥିଲ, ସେହି ନାମର ଶକ୍ତିରେ ସେମାନଙ୍କୁ ନିରାପଦରେ ରଖିଥିଲି ।
ମୁଁ ସେମାନଙ୍କୁ ସୁରକ୍ଷା କରିଥିଲି, ଏଣୁ ସେମାନଙ୍କ ମଧ୍ୟରୁ ଜଣେ
ବ୍ୟକ୍ତିର ଛଡ଼ା ଆଉ କାହାରି ବିନାଶ ଘଟି ନାହିଁ । ଅବଶ୍ୟ ଶାସ୍ତ୍ରୋକ୍ତି
ସଫଳ ହେବାର ପାଇଁ ସେହି ବ୍ୟକ୍ତିର ବିନାଶ ଆବଶ୍ୟକ ଥିଲା ।
୧୩ ବର୍ତ୍ତମାନ ମୁଁ ତୁମ ନିକଟକୁ ଯାଉଛି, ମୁଁ ଜଗତରେ ଏ ସମସ୍ତ କହୁଛି,
ଯେପରିକି ସେମାନେ ହୃଦୟରେ ମୋର ଆନନ୍ଦ ପୂର୍ଣ୍ଣଭାବରେ ପାଇବେ ।
୧୪ ମୁଁ ସେମାନଙ୍କୁ ତୁମର ବାର୍ତ୍ତା ଦେଇଛି । ଜଗତ ସେମାନଙ୍କୁ ଘୃଣା
କରେ, କାରଣ ମୁଁ ଯେପରି ଜଗତର ନୁହେଁ, ସେପରି ସେମାନେ
୧୫ ଜଗତର ନୁହନ୍ତି । ସେମାନଙ୍କୁ ଜଗତରୁ ବାହାର କରି ନିଅ ବୋଲି
ପ୍ରାର୍ଥନା କରୁନାହିଁ, ସେମାନଙ୍କୁ ଶୟତାନଠାରୁ ରକ୍ଷା କରିବାପାଇଁ
୧୬ ପ୍ରାର୍ଥନା କରେ । ଯେପରି ମୁଁ ଜଗତର ନୁହେଁ, ସେପରି ସେମାନେ
୧୭ ଜଗତର ନୁହନ୍ତି । ସତ୍ୟ ଦ୍ୱାରା ସେମାନଙ୍କୁ ତୁମର ଉଦ୍ଦେଶ୍ୟରେ
୧୮ ଉତ୍ସର୍ଗୀକୃତ କରିଦିଅ ; ତୁମର ବାଣୀହିଁ ସତ୍ୟ । ତୁମେ ମୋତେ ଜଗତକୁ
ପ୍ରେରଣ କରିଥିବା ପରି, ସେମାନଙ୍କୁ ମୁଁ ଜଗତକୁ ପ୍ରେରଣ କରିଛି ।
୧୯ ସେମାନଙ୍କ ନିମନ୍ତେ ମୁଁ ନିଜେ ନିଜକୁ ତୁମଠାରେ ଉତ୍ସର୍ଗ କରିଦେଉଛି,
ଯେପରିକି ସେମାନେ ମଧ୍ୟ ସତ୍ୟଦ୍ୱାରା ଉତ୍ସର୍ଗୀକୃତ ହୋଇ ପାରିବେ ।

୨୦ କେବଳ ସେମାନଙ୍କ ପାଇଁ ପ୍ରାର୍ଥନା କରୁନାହିଁ, ସେମାନଙ୍କର
ବାର୍ତ୍ତା ସାହାଯ୍ୟରେ ଯେଉଁମାନେ ମୋଠାରେ ବିଶ୍ୱାସ କରନ୍ତି
୨୧ ସେମାନଙ୍କ ପାଇଁ ମଧ୍ୟ ମୋର ପ୍ରାର୍ଥନା । ସେମାନେ ସମସ୍ତେ ଏକ

ହେଉନ୍ତୁ, ଏହି ମୋର ପ୍ରାର୍ଥନା । ପିତଃ, ମୁଁ ତୁମଠାରେ ଓ ତୁମେ
ମୋଠାରେ ବିଦ୍ୟମାନ ଥିବା ପରି ସେମାନେ ଆମଠାରେ ବିଦ୍ୟମାନ
ଥାଉନ୍ତୁ । ତା' ହେଲେ ଜଗତ ବିଶ୍ୱାସ କରିବ ଯେ, ତୁମେ ମୋତେ
୨୨ ପ୍ରେରଣ କରିଛ । ତୁମେ ମୋତେ ଯେଉଁ ମହିମା ପ୍ରଦାନ କରିଛ, ତାହା
ମୁଁ ସେମାନଙ୍କୁ ଦେଇଛି, ଯେପରି କି ତୁମେ ଓ ମୁଁ ଏକ ହୋଇ
୨୩ ଥିବାପରି ସେମାନେ ମଧ୍ୟ ଏକ ହୋଇ ପାରିବେ । ମୁଁ ସେମାନଙ୍କଠାରେ
ଓ ତୁମେ ମୋଠାରେ, ସେମାନେ ସମସ୍ତେ ସଂପୂର୍ଣ୍ଣରୂପେ ଏକ ହୁଅନ୍ତୁ ।
ତା'ହେଲେ ଜଗତ ଜାଣିପାରିବ ଯେ, ତୁମେ ମୋତେ ପ୍ରେରଣ କରିଛ
ଏବଂ ମୋତେ ପ୍ରେମ କରୁଥିବାପରି ସେମାନଙ୍କୁ ମଧ୍ୟ ପ୍ରେମ କରୁଛ ।

୨୪ "ପିତଃ, ଏମାନେ ମୋ ପାଇଁ ତୁମର ଦାନ । ମୋର ଇଚ୍ଛା, ମୁଁ
ଯେଉଁଠାରେ ଥାଏ, ସେଠାରେ ସେମାନେ ମୋର ସହିତ ରହନ୍ତୁ,
ତା'ହେଲେ ସେମାନେ ମୋର ମହିମା ଦର୍ଶନ କରିବେ । ଏହି ମହିମା
ତୁମେ ମୋତେ ଦେଇଛ, କାରଣ ଜଗତ ସୃଷ୍ଟିର ପୂର୍ବରୁ ତୁମେ
୨୫ ମୋତେ ପ୍ରେମ କରିଛ । ଧାର୍ମିକ ପିତା, ଜଗତ ତୁମକୁ ଜାଣେ ନାହିଁ,
କିନ୍ତୁ ମୁଁ ଜାଣେ ଏବଂ ଏମାନେ ଜାଣନ୍ତି ଯେ, ତୁମେ ମୋତେ ପ୍ରେରଣ
୨୬ କରିଛ । ମୁଁ ସେମାନଙ୍କୁ ତୁମ ନାମ ଜଣାଇ ଦେଇଛି ଓ ଜଣାଉଥିବି,
ଯେପରି କି ମୋ ପ୍ରତି ତୁମର ଯେଉଁ ପ୍ରେମ ତାହା ସେମାନଙ୍କଠାରେ
ରହିବ ଓ ମୁଁ ମଧ୍ୟ ସେମାନଙ୍କଠାରେ ବିଦ୍ୟମାନ ଥିବି ।"

## ଯୀଶୁ ବନ୍ଦୀ ହେବା :

(ମାଥିଉ ୨୬:୪୭-୫୬; ମାର୍କ ୧୪:୪୩-୫୦; ଲୂକ ୨୨:୪୭-୫୩ ମଧ୍ୟ ପାଠକର ।)

୧୮ ଯୀଶୁ ପ୍ରାର୍ଥନା ଶେଷକରି ଶିଷ୍ୟମାନଙ୍କ ସହିତ କିଦ୍ରୋଣ ନଦୀର
ଅପରପାର୍ଶ୍ୱକୁ ଗଲେ । ସେଠାରେ ଗୋଟିଏ ଉଦ୍ୟାନ ଥିଲା, ଯୀଶୁ ଓ
୧ ତାଙ୍କର ଶିଷ୍ୟମାନେ ସେହି ଉଦ୍ୟାନରେ ପ୍ରବେଶ କଲେ । ଯେଉଁ ଯିହୁଦା

ତାଙ୍କୁ ଧରାଇବ ସେ ସେହି ସ୍ଥାନ ଜାଣିଥିଲା । କାରଣ ବହୁବାର ଯୀଶୁ
୩ ଓ ଶିଷ୍ୟମାନେ ସେଠାରେ ଏକତ୍ର ହୋଇଥିଲେ । ଯିହୁଦା ସଙ୍ଗରେ
ଦଳେ ସୈନ୍ୟ ଓ ମନ୍ଦିର ପ୍ରହରୀଙ୍କୁ ନେଇ ସେ ସ୍ଥାନକୁ ଗଲା । ପ୍ରଧାନ
ଯାଜକ ଓ ଫାରୂଶୀମାନେ ସେମାନଙ୍କୁ ଯୋଗାଇ ଦେଇଥାନ୍ତି । ସେମାନେ
୪ ସମସ୍ତେ ବତି, ମଶାଲ ଓ ଅସ୍ତ୍ରଶସ୍ତ୍ର ଧରିଥାନ୍ତି । ଯୀଶୁ ତାଙ୍କ ପାଇଁ
ଯାହା ଯାହା ଘଟିବାକୁ ଯାଉଛି ଜାଣିଥିଲେ । ଏଣୁ ଆଗେଇ ଯାଇ
୫ ସେମାନଙ୍କୁ କହିଲେ, "ତୁମେମାନେ କାହାକୁ ଖୋଜୁଛ ?" ସେମାନେ
ଉତ୍ତର ଦେଲେ, "ନାଜରିତର ଯୀଶୁଙ୍କୁ ।" ଯୀଶୁ କହିଲେ, "ମୁଁ
ସେହି ବ୍ୟକ୍ତି ।"

ତାଙ୍କୁ ଧରାଇବା ବ୍ୟକ୍ତି ଯିହୁଦା ସେମାନଙ୍କ ସହିତ ଠିଆ
୬ ହୋଇଥିଲା । ଯେତେବେଳେ ଯୀଶୁ ସେମାନଙ୍କୁ କହିଲେ, "ମୁଁ ସେହି
ବ୍ୟକ୍ତି ।" ସେମାନେ ସମସ୍ତେ ପଛେଇ ଯାଇ ଭୂମିରେ ପଡ଼ିଗଲେ । ଯୀଶୁ
୭ ପୁନର୍ବାର ସେମାନଙ୍କୁ ପଚାରିଲେ, "ତୁମେମାନେ କାହାକୁ ଖୋଜୁଛ ?
୮ ସେମାନେ କହିଲେ, "ନାଜରିତର ଯୀଶୁଙ୍କୁ" । ଯୀଶୁ କହିଲେ,
"ମୁଁ ତୁମମାନଙ୍କୁ କହିସାରିଛି ଯେ, ମୁଁ ସେହି ବ୍ୟକ୍ତି, ଯଦି ତୁମେମାନେ
ମୋତେ ଖୋଜୁଥିଲ, ଏହି ଅନ୍ୟଲୋକମାନଙ୍କୁ ଯିବାପାଇଁ ଛାଡ଼ିଦିଅ ।"

୯ ଯୀଶୁ ଏପରି କହି ତାଙ୍କର ଏହି ଉକ୍ତିକୁ ସଫଳ କଲେ, 'ପିତା !
ତୁମେ ଯେଉଁମାନଙ୍କୁ ମୋତେ ଦେଇଛ ସେମାନଙ୍କ ମଧ୍ୟରୁ ଜଣକୁ
୧୦ ସୁଦ୍ଧା ହରାଇ ନାହିଁ ।' ଶିମୋନ ପିତରଙ୍କ ନିକଟରେ ଖଡ୍ଗଥିଲା, ସେ
ତାହା ବାହାର କରି ପ୍ରଧାନ ଯାଜକଙ୍କର ଦାସକୁ ଆଘାତ କରି ତାର
ଡାହାଣ କାନଟିକୁ କାଟି ପକାଇଲେ । ସେହି ଦାସର ନାମ ମାଲ୍‌ଖ ।
୧୧ ଯୀଶୁ ପିତରଙ୍କୁ କହିଲେ, "ତୁମର ଖଡ୍ଗକୁ ଖାପରେ ରଖ । ପିତା
ମୋତେ ଯେଉଁ ଦୁଃଖର ପାତ୍ର ପାନ କରିବାକୁ ଦେଇଛନ୍ତି, ତାକୁ କଅଣ
ପାନ କରିବି ନାହିଁ ?

## ହାନାନଙ୍କ ସମ୍ମୁଖରେ ଯୀଶୁ :

(ମାଥିଉ ୨୬:୫୭-୫୮ । ମାର୍କ ୧୪ : ୫୩-୫୪ । ଲୂକ ୨୨:୫୪ ପାଠକର ।)

୧୨ ସୈନ୍ୟଦଳ, ସେମାନଙ୍କର ସେନାଧ୍ୟକ୍ଷ ଓ ଯିହୁଦୀମାନଙ୍କର ପ୍ରହରୀ-
୧୩ ମାନେ ଯୀଶୁଙ୍କୁ ଗିରଫ କରି ବାନ୍ଧିପକାଇଲେ । ସେମାନେ ତାଙ୍କୁ
ପ୍ରଥମେ ନେଇଗଲେ ହାନାନଙ୍କ ନିକଟକୁ । ସେ ଥିଲେ ସେ ବର୍ଷର
୧୪ ମହାଯାଜକ କୟାଫାଙ୍କର ଶ୍ୱଶୁର । ଏହି କୟାଫା ଯିହୁଦୀମାନଙ୍କୁ
ପରାମର୍ଶ ଦେଇଥିଲେ ଯେ, ସମୁଦାୟ ଜାତିର ନିମନ୍ତେ ଜଣେ ବ୍ୟକ୍ତି
ମୃତ୍ୟୁଭୋଗ କରିବା ଶ୍ରେୟସ୍କର ।

## ପିତରଙ୍କର ଯୀଶୁଙ୍କୁ ଅସ୍ୱୀକାର :

(ମାଥିଉ ୨୬ : ୬୯-୭୦ । ମାର୍କ ୧୪ :୬୬-୬୮ । ଲୂକ : ୨୨ : ୫୫-୫୭
ପାଠକର ।)

୧୫ ଶିମୋନ ପିତର ଓ ଆଉ ଜଣେ ଶିଷ୍ୟ ଯୀଶୁଙ୍କର ପଶ୍ଚାଦ୍‌ଗମନ
କରୁଥାନ୍ତି । ସେହି ଅନ୍ୟ ଶିଷ୍ୟ ଜଣକ ପ୍ରଧାନ ଯାଜକଙ୍କର ଅତି
୧୬ ସୁପରିଚିତ ଥିଲେ । ଏଣୁ ସେ ଯୀଶୁଙ୍କ ସହିତ ମହାଯାଜକଙ୍କର
ବାସଭବନର ହତା ଭିତରକୁ ଚାଲିଗଲେ । ପିତର କିନ୍ତୁ ବାହାରେ
ଫାଟକ ନିକଟରେ ଥାନ୍ତି । ମହାଯାଜକଙ୍କର ସୁପରିଚିତ ସେହି ଅନ୍ୟ
ଶିଷ୍ୟଟି ଫେରି ବାହାରକୁ ଗଲେ । ସେ ଫାଟକ ନିକଟରେ ବାଳିକା
୧୭ ସହିତ କଥାବାର୍ତ୍ତା କରି ପିତରଙ୍କୁ ଭିତରକୁ ନେଇ ଆସିଲେ । ଫାଟକ
ନିକଟରୁ ବାଳିକାଟି ପିତରଙ୍କୁ କହିଲା, "ତୁମେ ସେ ଲୋକର ଜଣେ
ଶିଷ୍ୟ ନୁହଁକି ?" ପିତର ଉତ୍ତର ଦେଲେ, "ନା, ମୁଁ ନୁହେଁ ।"

୧୮ ସେତେବେଳେ ଅତି ଥଣ୍ଡା ହେଉଥାଏ, ଏଣୁ ଚାକର ଓ
ପ୍ରହରୀମାନେ କୋଇଲା ନିଆଁ ଜାଳି ତାରି ଚାରିପଟେ ଠିଆ ହୋଇ
ନିଆଁ ପୋଉଁ ଥିଲେ । ପିତର ମଧ୍ୟ ଚାଲି ଯାଇ ସେମାନଙ୍କର ସହିତ
ଠିଆ ହୋଇ ନିଆଁ ପୋଉଁଲେ ।

### ଯୀଶୁଙ୍କ ପ୍ରତି ପ୍ରଧାନ ଯାଜକଙ୍କର ପ୍ରଶ୍ନାବଳୀ :

(ମାଥିଉ ୨୬:୫୯-୬୬ । ମାର୍କ ୧୪:୫୫-୬୪ । ଲୂକ ୨୨:୬୬-୭୧ ପାଠ କର ।)

୧୯ ପ୍ରଧାନ ଯାଜକ ଯୀଶୁଙ୍କୁ ତାଙ୍କର ଶିଷ୍ୟଦଳ ଓ ଶିକ୍ଷା ସମ୍ପର୍କରେ
୨୦ ପ୍ରଶ୍ନ କଲେ । ଯୀଶୁ ଉତ୍ତର ଦେଲେ, "ମୁଁ ଯାହା କିଛି କହିଛି, ସମସ୍ତଙ୍କୁ
ପ୍ରକାଶ୍ୟରେ କହିଛି । ମୁଁ ସର୍ବଦା ସମାଜଗୃହ ଗୁଡ଼ିକରେ ଓ ମନ୍ଦିରରେ
ଶିକ୍ଷା ଦେଉଥାଏ, ସେ ସବୁ ସ୍ଥାନରେ ଯିହୁଦୀମାନେ ସମସ୍ତେ ଏକତ୍ର ହୁଅନ୍ତି,
୨୧ ମୁଁ ଗୁପ୍ତରେ କିଛି କହିନାହିଁ । ତେବେ ଆପଣ ମୋତେ ପଚାରୁଛନ୍ତି
କାହିଁକି ? ଯେଉଁମାନେ ମୋର କଥା ଶୁଣିଛନ୍ତି ସେମାନଙ୍କୁ ପଚାରନ୍ତୁ ।
ମୁଁ କଅଣ କଅଣ କହିଛି ସେମାନଙ୍କୁ ପଚାରନ୍ତୁ; ମୁଁ କଅଣ କହିଛି,
୨୨ ସେମାନେ ଜାଣନ୍ତି ।" ଯୀଶୁ ଏହା କହିବାରୁ ସେଠାରେ ଥିବା ଜଣେ
ପ୍ରହରୀ ତାଙ୍କୁ ଚାପୁଡ଼ାଏ ମାରି କହିଲା, "ତୋର କେଡେ ସାହସ, ଏପରି
୨୩ କଥା ମହାଯାଜକଙ୍କୁ କହୁଛୁ ?" ଯୀଶୁ ଉତ୍ତର ଦେଲେ, "ଯଦି ମୁଁ
କିଛି ଭୁଲ କହିଥାଏ, ସେ ଭୁଲ କଅଣ ଏଠାରେ ଯେଉଁମାନେ ଅଛନ୍ତି
ସେମାନଙ୍କୁ ଜଣାଅ । ଯଦି ଠିକ୍ କହିଛି, ମୋତେ ମାରିଲ କାହିଁକି ?"
୨୪ ହାନାନ ଯୀଶୁଙ୍କୁ ବନ୍ଧାଯାଇଥିବା ଅବସ୍ଥାରେ ମହାଯାଜକ
କୟାଫାଙ୍କ ନିକଟକୁ ପଠାଇ ଦେଲେ ।

### ପୁନର୍ବାର ପିତରଙ୍କର ଯୀଶୁଙ୍କୁ ଅସ୍ୱୀକାର :

(ମାଥିଉ ୨୬ : ୭୧-୭୫ । ମାର୍କ ୧୪ : ୬୯-୭୨ । ଲୂକ
୨୨ : ୫୮-୬୨ ପାଠ କର ।)

୨୫ ତେଣେ ପିତର ଠିଆ ହୋଇ ନିଆଁ ପୋଉଁଥାନ୍ତି । ଅନ୍ୟମାନେ
ତାଙ୍କୁ ପଚାରିଲେ, "ତୁମେ ସେ ଲୋକର ଜଣେ ଶିଷ୍ୟ ନୁହଁ କି ?"
୨୬ ପିତର ଅସ୍ୱୀକାର କଲେ । ସେ କହିଲେ, "ନା, ମୁଁ ନୁହେଁ ।" ପ୍ରଧାନ
ଯାଜକଙ୍କର ଜଣେ ଦାସ ସେଠାରେ ଥିଲେ, ପିତର ଯାହାର କାନ କାଟି

ଦେଇଥିଲେ ସେ ତାର ଆତ୍ମୀୟ । ସେ କହିଲା, "ମୁଁ ତୁମକୁ ସେ
୨୭ ବଗିଚାରେ ଦେଖି ନ ଥିଲି ?" ପିତର ଆଉ ଥରେ କହିଲେ, ନା ।"
ସେହିକ୍ଷଣି କୁକୁଡ଼ା ଡାକିଲା ।

## ପିଲାତଙ୍କ ସମ୍ମୁଖରେ ଯୀଶୁ :

(ମାଥିଉ ୨୭ : ୧-୨, ୧୧-୧୪ । ମାର୍କ ୧୫ : ୧-୫ ।
ଲୂକ ୨୩ : ୧-୫ ।)

୨୮ ସେମାନେ ଯୀଶୁଙ୍କୁ କୟାଫାଙ୍କ ବାସଭବନରୁ ରାଜ୍ୟପାଳଙ୍କର
ଭବନକୁ ନେଇଗଲେ । ସେତେବେଳେ ଅତି ପ୍ରତ୍ୟୁଷ । ଯିହୁଦୀମାନେ
ଯେପରି ନିସ୍ତାର ପର୍ବର ଭୋଜ ଗ୍ରହଣ କରି ପାରିବେ, ଏଥିପାଇଁ ନିଜ
ନିଜକୁ ଶୁଚି ଅବସ୍ଥାରେ ରଖିବାକୁ ଚାହୁଁଥିଲେ । ଏଣୁ ସେମାନେ
୨୯ ରାଜ୍ୟପାଳଙ୍କ ଭବନରେ ପ୍ରବେଶ କଲେ ନାହିଁ । ରାଜ୍ୟପାଳ ପିଲାତ
ବାହାରି ସେମାନଙ୍କ ନିକଟକୁ ଆସି ପଚାରିଲେ, "ଏ ଲୋକର
୩୦ ବିରୁଦ୍ଧରେ ତୁମର କଅଣ ଅଭିଯୋଗ ଅଛି ?" ସେମାନେ ଉତ୍ତର
ଦେଲେ, "ସେ କୌଣସି ଦୋଷ କରି ନ ଥିଲେ ଆମେ ତାକୁ ତୁମ
୩୧ ନିକଟକୁ ଆଣି ନଥାନ୍ତୁ !" ପିଲାତ ସେମାନଙ୍କୁ କହିଲେ, "ତୁମେମାନେ
ନିଜେ ନିଜେ ତାକୁ ତୁମ ନିଜର ବ୍ୟବସ୍ଥା ଅନୁଯାୟୀ ବିଚାର କର ।"
ଯିହୁଦୀମାନେ ଉତ୍ତର ଦେଲେ, "କୌଣସି ବ୍ୟକ୍ତିକୁ ପ୍ରାଣଦଣ୍ଡ ଦେବାର
୩୨ ଅଧିକାର ଆମର ନାହିଁ ।" ଯୀଶୁ କେଉଁ ପ୍ରକାର ମୃତ୍ୟୁଭୋଗ କରିବେ,
ଏହାର ସଙ୍କେତ ଦେଇ ଯାହା କହିଥିଲେ, ତାହା ସତ୍ୟ ହେବାପାଇଁ
ଏହା ଘଟିଥିଲା । ପିଲାତ ଭବନକୁ ଯାଇ ଯୀଶୁଙ୍କୁ ଡାକିଲେ ; ସେ
୩୩,୩୪ ତାଙ୍କୁ କହିଲେ, "ତୁମେ କଅଣ ଯିହୁଦୀମାନଙ୍କର ରାଜା ?" ଯୀଶୁ
ଉତ୍ତର ଦେଲେ, "ଏ ପ୍ରଶ୍ନ ଆପଣ ନିଜରୁ କରୁଛନ୍ତି ନା ଅନ୍ୟମାନେ
୩୫ ମୋ ବିଷୟରେ ଆପଣଙ୍କୁ କହିଛନ୍ତି ?" ପିଲାତ ଉତ୍ତର ଦେଲେ, "ତୁମେ
କଅଣ ମନେ କରୁଛ ଯେ, ମୁଁ ଜଣେ ଯିହୁଦୀ ? ତୁମର ନିଜର ଲୋକେ
୩୬ ଓ ପ୍ରଧାନ ଯାଜକମାନେ ତୁମକୁ ମୋତେ ସମର୍ପଣ କରିଛନ୍ତି । ତୁମେ

କଅଣ କରିଛ ?" ଯୀଶୁ କହିଲେ, "ମୋର ରାଜ୍ୟ ଏ ଜଗତର ନୁହେଁ ।
ଯଦି ମୋର ରାଜ୍ୟ ଏ ଜଗତର ହୋଇଥାଆନ୍ତା, ତେବେ ମୋର
ଅନୁଚରମାନେ ଯୁଦ୍ଧ କରିଥାନ୍ତେ ଏବଂ ମୋତେ ଯିହୁଦୀମାନଙ୍କ ହାତରେ
ଧରାଇ ଦେଇ ନ ଥାଆନ୍ତେ । ନା, ମୋର ରାଜ୍ୟ ଏଠାର ନୁହେଁ ।"
୩୭ ଏଣୁ ପିଲାତ ତାଙ୍କୁ ପଚାରିଲେ, "ତା'ହେଲେ ତୁମେ ରାଜା, ନୁହଁ କି ?"
ଯୀଶୁ ଉତ୍ତର ଦେଲେ, "ଆପଣ କହୁଛନ୍ତି ଯେ, ମୁଁ ଜଣେ ରାଜା ।
ମୋର ଜନ୍ମଗ୍ରହଣ ଓ ଏହି ଜଗତକୁ ଆଗମନର ଗୋଟିଏ ମାତ୍ର ଉଦ୍ଦେଶ୍ୟ,
ମୁଁ ଲୋକମାନଙ୍କୁ ସତ୍ୟ ବିଷୟରେ କହିବି ; ଯେ ସତ୍ୟକାମୀ ସେ
୩୮ ମୋର କଥା ଶୁଣିବ ।" ପିଲାତ ପ୍ରଶ୍ନ କଲେ, "ସତ୍ୟ କଅଣ ?"

### ଯୀଶୁଙ୍କ ପ୍ରତି ମୃତ୍ୟୁଦଣ୍ଡ :

(ମାଥି ୨୭ : ୧୫-୩୧ । ମାର୍କ ୧୫ : ୬-୨୦ ।
ଲୂକ ୨୩ : ୧୩-୨୫ ପାଠ କର ।)

ପିଲାତ ପୁନର୍ବାର ବାହାରକୁ ଗଲେ ; ସେ ଯିହୁଦୀମାନଙ୍କ
ନିକଟକୁ ଯାଇ ସେମାନଙ୍କୁ କହିଲେ, "ମୁଁ ତାଙ୍କୁ ଦଣ୍ଡ ଦେବାର ପାଇଁ
୩୯ କୌଣସି କାରଣ ପାଉନାହିଁ । କିନ୍ତୁ ତୁମର ଗୋଟିଏ ବିଧି ଅଛି,
ତଦନୁସାରେ ମୁଁ ନିସ୍ତାରପର୍ବ ସମୟରେ ସବୁବେଳେ ଜଣେ ବନ୍ଦୀକୁ
ମୁକ୍ତ କରି ଦିଏ । ତୁମେମାନେ କଅଣ ଚାହଁ ଯେ, ଯିହୁଦୀମାନଙ୍କ
ରାଜାକୁ ତୁମ ପାଇଁ ମୁକ୍ତ କରିଦେବି ?"

୪୦ ସେମାନେ ଚିତ୍କାର କରି ଉତ୍ତର ଦେଲେ, "ନାଁ, ନାଁ, ତାଙ୍କୁ
ନୁହେଁ । ଆମେ ଚାହୁଁ ବାରବ୍ବାକୁ ।" ଏହି ବାରବ୍ବା ଥିଲା ଜଣେ
ଡକାଇତ ।

୧୯ ତା' ପରେ ପିଲାତ ଯୀଶୁଙ୍କୁ ନେଇ କୋରଡ଼ାରେ ପ୍ରହାର
୨ କରାଇଲେ । ସୈନ୍ୟମାନେ କଣ୍ଟାଡ଼ାଳଗୁଡ଼ିକରେ ଗୋଟିଏ ମୁକୁଟ
ତିଆରି କରି ତାଙ୍କର ମସ୍ତକ ଉପରେ ରଖିଲେ ଏବଂ ତାଙ୍କୁ ଗୋଟିଏ

୩ ବାଇଗଣିଆ ପୋଷାକ ପିନ୍ଧାଇ ଦେଲେ । ସେମାନେ ତାଙ୍କ ନିକଟକୁ
ଆସି କହିଲେ, "ହେ ଯିହୁଦୀ ରାଜା, ନମସ୍କାର ।" ସେମାନେ ତାଙ୍କୁ
ଚାପୁଡ଼ା ମାରିଲେ ।

୪ ପିଲାତ ଆଉ ଥରେ ବାହାରେ ଜନତା ଆଡ଼କୁ ଲକ୍ଷ୍ୟ କରି କହିଲେ,
"ଦେଖ, ମୁଁ ତାଙ୍କୁ ଏଠାକୁ ତୁମ ନିକଟକୁ ଆଣିଛି, ଯେପରି କି ତୁମର
ହୃଦ୍‌ବୋଧ ହେବ ଯେ, ତାଙ୍କୁ ଦଣ୍ଡ ଦେବାର ପାଇଁ ମୁଁ କୌଣସି
୫ କାରଣ ପାଉନାହିଁ ।" ଯୀଶୁ କଣ୍ଟାର ମୁକୁଟ ଓ ବାଇଗଣିଆ ପୋଷାକ
ପିନ୍ଧି ବାହାରକୁ ଆସିଲେ ଓ ପିଲାତ ଜନତାକୁ ଲକ୍ଷ୍ୟ କରି କହିଲେ,
୬ "ଦେଖ ଏ ସେହି ବ୍ୟକ୍ତି ?" ପ୍ରଧାନ ଯାଜକ ଓ ପ୍ରହରୀମାନେ ତାଙ୍କୁ
ଦେଖି ଚିତ୍କାର କଲେ, "କ୍ରୁଶରେ ଚଢ଼ାଅନ୍ତୁ !" ପିଲାତ ସେମାନଙ୍କୁ
କହିଲେ "ତା ହେଲେ ତୁମେ ତାଙ୍କୁ ନେଇଯାଅ ଏବଂ କ୍ରୁଶରେ
ଚଢ଼ାଅ । ମୁଁ ତାଙ୍କୁ ଦଣ୍ଡ ଦେବା ପାଇଁ କୌଣସି କାରଣ ପାଉ ନାହିଁ ।
୭ ଯିହୁଦୀମାନେ ଉତ୍ତର ଦେଲେ, "ଆମମାନଙ୍କର ଗୋଟିଏ ବ୍ୟବସ୍ଥା ଅଛି,
ତଦନୁସାରେ ସେ ପ୍ରାଣଦଣ୍ଡର ଯୋଗ୍ୟ, କାରଣ ନିଜକୁ ସେ ଈଶ୍ୱରଙ୍କର
ପୁତ୍ର ବୋଲି ଦାବୀ କରୁଛି ।

୮ ପିଲାତ ସେମାନଙ୍କର ଏହି କଥା ଶୁଣି ଅଧିକ ଭୟ ପାଇଲେ ।
୯ ସେ ନିଜ ଭବନରେ ପ୍ରବେଶ କରି ଯୀଶୁଙ୍କୁ ପଚାରିଲେ, "ତୁମେ
୧୦ କେଉଁଠାରୁ ଆସିଛ ?" କିନ୍ତୁ ଯୀଶୁ ଉତ୍ତର ଦେଲେ ନାହିଁ । ପିଲାତ
ତାଙ୍କୁ କହିଲେ, "ତୁମେ ମୋତେ କଥା କହିବ ନାହିଁ ? ମନେ ରଖ
ତୁମକୁ ମୁକ୍ତ କରି ଦେବାର କ୍ଷମତା ଏବଂ ତୁମକୁ କ୍ରୁଶରେ ଚଢ଼ାଇ
୧୧ ଦେବାର କ୍ଷମତା ମଧ୍ୟ ମୋର ଅଛି ।" ଯୀଶୁ ଉତ୍ତର ଦେଲେ
"ଆପଣଙ୍କର ମୋ ଉପରେ କ୍ଷମତା ଅଛି, କାରଣ ଆପଣଙ୍କୁ ତାହା
ଈଶ୍ୱର ଦେଇଛନ୍ତି । ତେଣୁ ଯେଉଁ ବ୍ୟକ୍ତି ମୋତେ ଆପଣଙ୍କ ହସ୍ତରେ
୧୨ ସମର୍ପଣ କରିଅଛି, ତାର ଅପରାଧ ଘୋରତର ।" ପିଲାତ ଏହା ଶୁଣି
ଯୀଶୁଙ୍କୁ ମୁକ୍ତ କରି ଦେବାର ଉପାୟ ଅନ୍ୱେଷଣ କଲେ । କିନ୍ତୁ ଯିହୁଦୀ-

ମାନେ ଚିତ୍କାର କଲେ, "ଯଦି ଆପଣ ତାଙ୍କୁ ମୁକ୍ତ କରି ଦିଅନ୍ତି,
ଜଣାଯିବ ଯେ, ଆପଣ ସମ୍ରାଟଙ୍କର ମିତ୍ର ନୁହଁନ୍ତି । ଯେ ନିଜକୁ ରାଜା
୧୩ ବୋଲି ଦାବୀ କରେ, ସେ କାଇସରଙ୍କର ବିରୋଧୀ ।" ପିଲାତ ଏହା ଶୁଣି
ଯୀଶୁଙ୍କୁ ବାହାରକୁ ଆଣିଲେ । ସେ ପ୍ରସ୍ତର ଚଟାଣ (ଏବ୍ରୀ ଭାଷାରେ
'ଗବ୍ବଥା') ନାମକ ସ୍ଥାନକୁ ଯାଇ ବିଚାରାସନରେ ଉପବିଷ୍ଟ ହେଲେ ।

୧୪ ତାହା ନିସ୍ତାର ପର୍ବର ପୂର୍ବ ଦିବସ ଥିଲା, ଦିନର ପ୍ରାୟ ବାର-
ଘଣ୍ଟା ସମୟ । ପିଲାତ ଯିହୁଦୀମାନଙ୍କୁ କହିଲେ, "ଏ ତୁମର ରାଜା ।"
୧୫ ସେମାନେ ଚିତ୍କାର କଲେ, "ତାକୁ ମାରି ଦିଅନ୍ତୁ, ମାରି ଦିଅନ୍ତୁ !
କ୍ରୁଶରେ ଚଢ଼ାନ୍ତୁ ।" ପିଲାତ ସେମାନଙ୍କୁ ପ୍ରଶ୍ନ କଲେ, "ତୁମେ କଅଣ
୧୬ ଚାହଁ ଯେ, ମୁଁ ତୁମର ରାଜାଙ୍କୁ କ୍ରୁଶରେ ଚଢ଼ାଇବି !" ପ୍ରଧାନ
ଯାଜକମାନେ ଉତ୍ତର ଦେଲେ । "କେବଳ କାଇସର ଆମ୍ଭମାନଙ୍କର
ରାଜା !" ପିଲାତ ଯୀଶୁଙ୍କୁ କ୍ରୁଶରେ ଚଢ଼ାଇବା ପାଇଁ ସେମାନଙ୍କ
ହସ୍ତରେ ସମର୍ପଣ କରିଦେଲେ ।

## ଯୀଶୁଙ୍କ କ୍ରୁଶାର୍ପଣ :

(ମାଥି ୨୭ : ୩୨-୪୪ । ମାର୍କ ୧୫ : ୨୧-୩୨ ।
ଲୂକ ୨୩ : ୨୬-୪୩ ପାଠକର )

୧୭ ସେମାନେ ଯୀଶୁଙ୍କର ଦାୟିତ୍ୱ ଗ୍ରହଣ କଲେ । ଯୀଶୁ ନିଜର
କ୍ରୁଶକୁ କାନ୍ଧେଇ ସେଠାରୁ ବାହାରିଲେ । 'ଖପୁରିସ୍ଥଳ' ନାମକ ଗୋଟିଏ
୧୮ ସ୍ଥାନ ଥିଲା । ଏବ୍ରୀ ଭାଷାରେ ସେହି ସ୍ଥାନକୁ ଗଲ୍‌ଗଥା କହନ୍ତି । ଯୀଶୁ
ସେଠାରେ ପହଞ୍ଚିବା ପରେ ସେମାନେ ତାଙ୍କୁ କ୍ରୁଶରେ ଚଢ଼ାଇଲେ, ତାଙ୍କର
ଉଭୟ ପାର୍ଶ୍ୱରେ ଆଉ ଦୁଇଜଣଙ୍କୁ କ୍ରୁଶରେ ଚଢ଼ାଇ ଦିଆଗଲା । ଯୀଶୁ
୧୯ ସେମାନଙ୍କ ମଧ୍ୟରେ ଥାନ୍ତି । ପିଲାତ ଗୋଟିଏ ବିଜ୍ଞପ୍ତି ଲେଖି ତାଙ୍କର
କ୍ରୁଶରେ ଲଗାଇ ଦେଲେ । ସେଥିରେ ଲେଖାଥିଲା, 'ନାଜରେଥର ଯୀଶୁ,
୨୦ ଯିହୁଦୀମାନଙ୍କର ରାଜା ।' ଅନେକ ଯିହୁଦୀ ଏହାକୁ ପଢ଼ି ପାରିଥିଲେ,

କାରଣ ଯେଉଁଠାରେ ଯୀଶୁଙ୍କୁ କ୍ରୁଶରେ ଚଢ଼ା ଯାଇଥିଲା, ତାହା
ନଗରଠାରୁ ବହୁଦୂର ନ ଥିଲା । ଏହି ବାକ୍ୟ ଏବ୍ରୀ, ଲାଟିନ ଓ
୨୧ ଗ୍ରୀକ୍‌ଭାଷାରେ ଲେଖା ଯାଇଥିଲା । ଯିହୁଦୀ ମହାଯାଜକମାନେ ପିଲାତଙ୍କୁ
କହିଲେ, "ଯିହୁଦୀମାନଙ୍କର ରାଜା ବୋଲି ନ ଲେଖି ଲେଖନ୍ତୁ, ଏହି
୨୨ ବ୍ୟକ୍ତି କହିଥିଲା, "ମୁଁ ଯିହୁଦୀମାନଙ୍କର ରାଜା ।" ପିଲାତ ଉତ୍ତର
ଦେଲେ, "ମୁଁ ଯାହା ଲେଖିଛି, ତାହାହିଁ ରହିଲା ।"

୨୩ ସୈନ୍ୟମାନେ ତାଙ୍କୁ କ୍ରୁଶରେ ଚଢ଼ାଇ ଦେଇ ତାଙ୍କର ବସ୍ତ୍ରସବୁକୁ
ନେଇଗଲେ । ସେମାନେ ସେସବୁକୁ ସେମାନଙ୍କର ଚାରି ଜଣଙ୍କର
ମଧ୍ୟରେ ଭାଗ କରି ଦେଲେ । ସେମାନେ ତାଙ୍କର ବହିଁପୋଷାକଟିକୁ
ମଧ୍ୟ ନେଇଗଲେ । ତାହା ଉପରୁ ତଳଯାଏ ବୁଣାଯାଇଥିବା ଗୋଟିଏ
୨୪ ବସ୍ତ୍ର ଥିଲା । ସେଥିରେ ସିଲାଇ କରାଯାଇ ନ ଥିଲା । ସୈନ୍ୟମାନେ
ପରସ୍ପରକୁ କହିଲେ, "ଆମେ ଏହାକୁ ଚିରିବା ନାହିଁ, ଗୁଲିବାଣ୍ଟ କରି
ତାହା କାହାର ହେବ ସ୍ଥିର କରିବା ।" ନିମ୍ନୋକ୍ତ ଶାସ୍ତ୍ରୋକ୍ତିର ସତ୍ୟତା
ପ୍ରମାଣିତ ହେବାର ପାଇଁ ଏହା ଘଟିଥିଲା ।

'ସେମାନେ ନିଜ ଭିତରେ ମୋର ବସ୍ତ୍ର ଗୁଡ଼ିକୁ ଭାଗ କଲେ ।
ସେମାନେ ମୋର ପୋଷାକ ପାଇଁ ଗୁଲିବାଣ୍ଟ କଲେ ।'

୨୫ ତେଣୁ ସୈନ୍ୟମାନେ ସେହିପରି କଲେ । କ୍ରୁଶ ନିକଟରେ
ଯୀଶୁଙ୍କର ମାତା, ତାଙ୍କର ମାତାଙ୍କର ଭଗ୍ନୀ, କ୍ଲୋପାଙ୍କ ସ୍ତ୍ରୀ ମରିୟମ
୨୬ ଓ ମଗ୍‌ଦଲୀନୀ ମରିୟମ ଠିଆ ହୋଇଥିଲେ । ଯୀଶୁଙ୍କର ଦୃଷ୍ଟି ସେଠାରେ
ଠିଆ ହୋଇଥିବା ନିଜର ମାତା ଓ ନିଜର ପ୍ରିୟ ଶିଷ୍ୟଙ୍କ ଉପରେ
ପଡ଼ିଲା । ସେ ନିଜର ମାତାଙ୍କୁ କହିଲେ, "ମା, ଏ ତୁମର ପୁତ୍ର ।"
୨୭ ତା' ପରେ ସେ ସେହି ଶିଷ୍ୟଙ୍କୁ କହିଲେ, "ଏ ତୁମର ମା ।"
ସେହି ସମୟଠାରୁ ସେହି ଶିଷ୍ୟ ଯୀଶୁଙ୍କ ମାତାଙ୍କୁ ନେଇ ନିଜର ଘରେ
ରଖିଲେ ।

## ଯୀଶୁଙ୍କର ମୃତ୍ୟୁ :

(ମାଥିଉ ୨୭ : ୪୫-୫୬ । ମାର୍କ ୧୫ : ୩୩-୪୧ । ଲୂକ ୨୩ : ୪୪-୪୯
ପାଠ କର ।)

୨୮ ଯୀଶୁ ଜାଣିଲେ ଯେ, ସମସ୍ତ ବିଷୟ ସମାପ୍ତ ହୋଇ ସାରିଛି ;
ଶାସ୍ତ୍ରୋକ୍ତିକୁ ସତ୍ୟ କରିବା ପାଇଁ ସେ କହିଲେ, "ମୋତେ ତୃଷା
୨୯ ହେଉଛି ।" ସେଠାରେ ଗୋଟିଏ ପାତ୍ର ଥିଲା । ତାହା ଅମ୍ଳରସରେ
ପୂର୍ଣ୍ଣ ଥିଲା । ସେମାନେ ସେଥିରେ ଗୋଟିଏ ସ୍ପଞ୍ଜ ଭିଜାଇ ଦେଲେ ।
ତାକୁ ଏଜୋବ ଗଛର ଗୋଟିଏ ଡାଳରେ ରଖି ଟେକି ଧରି ଯୀଶୁଙ୍କ
୩୦ ମୁଖରେ ଲଗାଇଲେ । ଯୀଶୁ ଅମ୍ଳରସ ଗ୍ରହଣ କରି କହିଲେ, "ସମାପ୍ତ
ହେଲା ।" ତା'ପରେ ମସ୍ତକ ଅବନତ କରି ସେ ପ୍ରାଣତ୍ୟାଗ କଲେ ।

## ଯୀଶୁଙ୍କ ବକ୍ଷରେ ବର୍ଚ୍ଛାଘାତ :

୩୧ ତାହା ଥିଲା ନିସ୍ତାର ପର୍ବର ପୂର୍ବ ଦିବସ । ଆଗାମୀ ବିଶ୍ରାମବାର
ଅତି ପବିତ୍ର ଥିଲା । ଉକ୍ତ ଦିନ କ୍ରୁଶରେ ଶରୀରଗୁଡ଼ିକ ରହି ପାରିବ
ନାହିଁ, ଏ ହେତୁ ଯିହୁଦୀମାନେ ପିଲାତଙ୍କୁ ଅନୁରୋଧ କଲେ ଯେ,
କ୍ରୁଶାର୍ପିତ ଲୋକମାନଙ୍କର ଗୋଡ଼ ଭାଙ୍ଗି ସେମାନଙ୍କୁ କ୍ରୁଶରୁ ବାହାର
୩୨ କରି ଆଣିବା ପାଇଁ ଅନୁମତି ଦିଆଯାଉ । ଏଣୁ ସୈନ୍ୟମାନେ ଯାଇ
ପ୍ରଥମ ବ୍ୟକ୍ତିଟିର ଗୋଡ଼ ଭାଙ୍ଗି ପକାଇଲେ, ତା'ପରେ ଯୀଶୁଙ୍କ ସହିତ
୩୩ କ୍ରୁଶାର୍ପିତ ଅନ୍ୟ ବ୍ୟକ୍ତିଟିର ମଧ୍ୟ ଗୋଡ଼ ଭାଙ୍ଗି ଦେଲେ, କିନ୍ତୁ ଯେତେ-
ବେଳେ ଯୀଶୁଙ୍କ ନିକଟକୁ ଆସିଲେ, ଦେଖିଲେ ଯେ, ସେ ପ୍ରାଣତ୍ୟାଗ କରି
୩୪ ସାରିଲେଣି, ଏଣୁ ସେମାନେ ତାଙ୍କର ଗୋଡ଼ ଭାଙ୍ଗିଲେ ନାହିଁ । କିନ୍ତୁ
ଜଣେ ସୈନ୍ୟ ଯୀଶୁଙ୍କ ବକ୍ଷରେ ବର୍ଚ୍ଛାବିଦ୍ଧ କଲା ; ସେହିକ୍ଷଣି ସେଥିରୁ
୩୫ ରକ୍ତ ଓ ଜଳ ବାହାରି ପଡ଼ିଲା । ଯେ ଏହାର ପ୍ରତ୍ୟକ୍ଷଦର୍ଶୀ ସେ କହୁଛି,
ଯେପରିକି ତୁମେମାନେ ମଧ୍ୟ ଏହାକୁ ବିଶ୍ୱାସ କରିବ । ସେ ଯାହା
୩୬ କହିଛି, ଠିକ୍ କହିଛି । ସେ ଜାଣେ ଯେ, ସେ ସତ୍ୟ କହୁଛି । ନିମ୍ନୋକ୍ତ

ଶାସ୍ତ୍ରୋକ୍ତିର ସତ୍ୟତା ପ୍ରମାଣିତ କରିବା ପାଇଁ ଏହା କରାଯାଇ ଥିଲା,
୩୭ 'ତାଙ୍କର କୌଣସି ଅସ୍ଥି ଭଗ୍ନ ହେବ ନାହିଁ ।' ଅନ୍ୟ ଏକ ଶାସ୍ତ୍ରୋକ୍ତିରେ
କଥିତ, 'ଲୋକେ ଯାହାଙ୍କୁ ବିଦ୍ଧ କଲେ, ତାଙ୍କ ପ୍ରତି ଦୃଷ୍ଟିପାତ କଲେ ।'

## ଯୀଶୁଙ୍କର ସମାଧି :

(ମାଥିଉ ୨୭ : ୫୭-୬୧ । ମାର୍କ ୧୫ : ୪୨-୪୭ । ଲୂକ ୨୩ : ୫୦-୫୬ ପାଠକର ।)

୩୮ ଆରିମାଥିଆ ନଗରରେ ଯୋସେଫ ନାମକ ଜଣେ ବ୍ୟକ୍ତି ଥିଲେ ।
ସେ ଥିଲେ ଯୀଶୁଙ୍କର ଜଣେ ଶିଷ୍ୟ, କିନ୍ତୁ ଯିହୁଦୀମାନଙ୍କ ଭୟରେ ସେ
ତାହା ଗୁପ୍ତ କରିଥିଲେ । ସେ ପୂର୍ବୋକ୍ତ ଘଟଣା ପରେ ଯୀଶୁଙ୍କର ଶରୀରକୁ
ବାହାର କରି ନେବାକୁ ଅନୁମତି ପାଇବା ପାଇଁ ପିଲାତଙ୍କଠାରେ
ଆବେଦନ କଲେ । ପିଲାତ ତାଙ୍କୁ ଅନୁମତି ଦେଲେ । ସେ ଆସି
୩୯ ଯୀଶୁଙ୍କର ଶରୀରକୁ ବାହାର କରି ନେଇଗଲେ । ନୀକଦୀମ ନାମରେ
ଜଣେ ବ୍ୟକ୍ତି ପୂର୍ବେ ଯୀଶୁଙ୍କୁ ରାତ୍ରି ସମୟରେ ସାକ୍ଷାତ କରିଥିଲେ ।
ସେ ମଧ୍ୟ ପ୍ରାୟ ପଚିଶ କିଲୋଗ୍ରାମ ଗନ୍ଧରସ ମିଶ୍ରିତ ଅଗୁରୁ ସଙ୍ଗରେ
୪୦ ନେଇ ଯୋସେଫଙ୍କ ସହିତ ଗଲେ । ସେମାନେ ଦୁଇଜଣ ଯୀଶୁଙ୍କର
ଶରୀରକୁ ନେଇ ତାକୁ ସୁଗନ୍ଧଦ୍ରବ୍ୟ ସହିତ ସୂକ୍ଷ୍ମବସ୍ତ୍ରରେ ଗୁଡ଼ାଇଲେ ।
ଏହା ଥିଲା ଯିହୁଦୀମାନଙ୍କର ସମାଧି ନିମନ୍ତେ ଶବପ୍ରସ୍ତୁତିର ରୀତି ।
୪୧ ଯୀଶୁଙ୍କୁ ଯେଉଁ ସ୍ଥାନରେ କ୍ରୁଶବିଦ୍ଧ କରାଯାଇଥିଲା, ତାର ନିକଟରେ
ଗୋଟିଏ ଉଦ୍ୟାନ ଥିଲା । ସେହି ଉଦ୍ୟାନରେ ଗୋଟିଏ ନୂଆ କବର
୪୨ ଥିଲା ; ସେଠାରେ କେବେ କାହାକୁ ସମାଧି ଦିଆଯାଇ ନ ଥିଲା । ତାହା
ଥିଲା ଯିହୁଦୀ ବିଶ୍ରାମବାରର ପୂର୍ବ ଦିବସ ; ଏହା ଛଡ଼ା କବରଟି
ନିକଟରେ ଥିଲା, ଏଣୁ ସେମାନେ ଯୀଶୁଙ୍କର ଶରୀରକୁ ସେଠାରେ
ରଖିଦେଲେ ।

## ଶୂନ୍ୟ କବର :

(ମାଥି ୨୮ : ୧-୮ । ମାର୍କ ୧୬ : ୧-୮ । ଲୂକ ୨୪ : ୧-୧୨ ପାଠକର)

୨୦ ରବିବାରର ଅତି ପ୍ରାତଃକାଳ ; ଅନ୍ଧକାର ସମ୍ପୂର୍ଣ୍ଣ ଯାଇ ନାହିଁ ।
ମଗ୍‌ଦଲୀନୀ ମରିୟମ କବର ନିକଟକୁ ଯାଇ ଦେଖନ୍ତି, କବର ଦ୍ୱାରର
୨ ପ୍ରସ୍ତରଟିକୁ ଘୁଞ୍ଚାଇ ଦିଆଯାଇଛି । ସେ ଦୌଡ଼ିଯାଇ ଶିମୋନ ପିତର
ଓ ଆଉ ଜଣେ ଶିଷ୍ୟ-ଯାହାଙ୍କୁ ଯୀଶୁ ସ୍ନେହ କରୁଥିଲେ, ତାଙ୍କ ନିକଟରେ
ପହଞ୍ଚିଲେ । ସେ ସେମାନଙ୍କୁ କହିଲେ, ସେମାନେ ପ୍ରଭୁଙ୍କ ଶରୀରକୁ
୩ କବରରୁ ନେଇ ଯାଇଛନ୍ତି, କେଉଁଠି ରଖିଛନ୍ତି ଜାଣି ନାହିଁ । ପିତର
୪ ଓ ସେହି ଅନ୍ୟ ଶିଷ୍ୟଟି ବାହାରି କବରକୁ ଗଲେ । ଦୁଇ ଜଣ
ଦୌଡୁଥିଲେ, କିନ୍ତୁ ସେହି ଅନ୍ୟ ଶିଷ୍ୟଜଣି ପିତରଙ୍କୁ ଅତିକ୍ରମ କରି ପ୍ରଥମେ
୫ କବର ନିକଟରେ ପହଞ୍ଚିଲେ । ସେ ନଇଁପଡ଼ି ସୂକ୍ଷ୍ମବସ୍ତ୍ର ଗୁଡ଼ିକୁ ଦେଖିଲେ,
୬ କିନ୍ତୁ ଭିତରକୁ ଗଲେ ନାହିଁ । ତାଙ୍କର ପଛେ ପଛେ ଆସି ପହଞ୍ଚିଲେ
ପିତର । ସେ ସିଧା କବର ଭିତରେ ପ୍ରବେଶ କଲେ । ସେ ଦେଖିଲେ
୭ ଯେ, ସେଠାରେ ସେହି ସୂକ୍ଷ୍ମବସ୍ତ୍ରଗୁଡ଼ିକ ପଡ଼ିଛି । କିନ୍ତୁ ଯେଉଁ
ଗାମୁଛାରେ ତାଙ୍କର ମସ୍ତକ ବନ୍ଧା ଯାଇଥିଲା, ତାହା ସେହି ସୂକ୍ଷ୍ମବସ୍ତ୍ର
ଗୁଡ଼ିକର ସହିତ ନାହିଁ । ତାହା ଗୁଡ଼ାଯାଇ ଗୋଟିଏ ଅଲଗା ସ୍ଥାନରେ
୮ ରଖାଯାଇଛି । ତା'ପରେ ସେହି ଅନ୍ୟ ଶିଷ୍ୟଟି, ଯେ ପ୍ରଥମେ
କବରରେ ପହଞ୍ଚିଥିଲେ, ସେ ସେଥିରେ ପ୍ରବେଶ କଲେ । ସେ ଦେଖି ବିଶ୍ୱାସ
୯ କଲେ । ମୃତ୍ୟୁଭୋଗ କରି ପୁନର୍ବାର ଜୀବିତ ହେବା ତାଙ୍କର ଆବଶ୍ୟକ,
ଏହି ଶାସ୍ତ୍ରୋକ୍ତିକୁ ସେତେବେଳେ ସୁଦ୍ଧା ସେମାନେ ବୁଝିପାରି ନ ଥିଲେ ।
୧୦ ତା' ପରେ ସେହି ଶିଷ୍ୟମାନେ ନିଜ ନିଜ ଘରକୁ ଫେରିଗଲେ ।

## ମଗ୍‌ଦଲୀନୀ ମରିୟମଙ୍କ ପ୍ରତି ଯୀଶୁଙ୍କର ଦର୍ଶନ :

(ମାଥି ୨୮ : ୯-୧୦ । ମାର୍କ ୧୬ : ୯-୧୧ ପାଠକର ।

୧୧ କିନ୍ତୁ ମରିୟମ ସମାଧିର ବାହାରେ କ୍ରନ୍ଦନ କରୁଥାନ୍ତି । ସେ ନଇଁ
୧୨ ପଡ଼ି ସମାଧି ଭିତରକୁ ଅନାଇ ଦେଇ ଦୁଇଟି ଦୂତଙ୍କୁ ଦେଖିଲେ ।

ସେମାନେ ଶୁକ୍ଳବସ୍ତ୍ର ପରିଧାନ କରିଥାନ୍ତି । ଯୀଶୁଙ୍କର ଶରୀର ଯେଉଁ
ସ୍ଥାନରେ ରଖାଯାଇ ଥିଲା ସେଠାରେ ତାଙ୍କ ମସ୍ତକର ସ୍ଥାନର ନିକଟରେ
୧୩ ଜଣେ ଏବଂ ଆଉ ଜଣେ ପାଦସ୍ଥାନର ନିକଟରେ ବସିଥାନ୍ତି । ସେମାନେ
ମରିୟମଙ୍କୁ ପ୍ରଶ୍ନ କଲେ, "କାହିଁକି କାନ୍ଦୁଛ ମା ?" ମରିୟମ ଉତ୍ତର
ଦେଲେ, "ସେମାନେ ମୋର ପ୍ରଭୁଙ୍କୁ କୁଆଡେ ନେଇ ଯାଇଛନ୍ତି,
୧୪ କେଉଁଠାରେ ରଖିଛନ୍ତି, ମୁଁ ଜାଣି ପାରୁନାହିଁ ।" ମରିୟମ ଏହା କହି
ଦେଇ ମୁହଁ ବୁଲାଇ ପଛକୁ ଅନାଇ ଦେଖିଲେ, ସ୍ୱୟଂ ଯୀଶୁ ସେଠାରେ
୧୫ ଦଣ୍ଡାୟମାନ । କିନ୍ତୁ ତାଙ୍କୁ ଯୀଶୁ ବୋଲି ଚିହ୍ନି ପାରିଲେ ନାହିଁ । ଯୀଶୁ
ପ୍ରଶ୍ନ କଲେ, "ମା, କାହିଁକି କାନ୍ଦୁଛ, ତୁମେ କାହାକୁ ଖୋଜୁଛ ?"
ମରିୟମ ମନେ କଲେ, ସେ ସେହି ଉଦ୍ୟାନର ମାଳୀ । ସେ ତାଙ୍କୁ
କହିଲେ, "ମହାଶୟ । ଯଦି ଆପଣ ତାଙ୍କୁ ନେଇ ଯାଇଛନ୍ତି, କହନ୍ତୁ
୧୬ କେଉଁଠାରେ ରଖିଛନ୍ତି । ମୁଁ ଯାଇ ନେଇ ଆସିବି ।" ଯୀଶୁ ତାଙ୍କୁ
କହିଲେ, "ମରିୟମ !" ମରିୟମ ଯୀଶୁଙ୍କ ଆଡ଼କୁ ବୁଲିପଡ଼ି ଏବ୍ରୀ
୧୭ ଭାଷାରେ କହିଲେ, "ଗୁରୁ !" ଯୀଶୁ କହିଲେ, "ମୋତେ ଜାବୋଡ଼ି
ଧର ନାହିଁ, କାରଣ ମୁଁ ମୋର ପିତାଙ୍କ ନିକଟକୁ ଏତେବେଳ ଯାଏ
ଫେରିନାହିଁ । କିନ୍ତୁ ମୋ ଭାଇମାନଙ୍କ ନିକଟକୁ ଯାଇ ସେମାନଙ୍କୁ କୁହ
ଯେ, ମୁଁ ମୋର ଓ ତୁମମାନଙ୍କର ପିତା, ମୋର ଓ ତୁମମାନଙ୍କର
୧୮ ଈଶ୍ୱରଙ୍କ ନିକଟକୁ ଉର୍ଦ୍ଧ୍ୱ ଗମନ କରି ଫେରି ଯାଉଛି ।" ମଗଦଲୀନୀ
ମରିୟମ ଶିଷ୍ୟମାନଙ୍କ ନିକଟକୁ ଯାଇ କହିଲେ ଯେ, ସେ ପ୍ରଭୁଙ୍କର
ଦର୍ଶନ ପାଇଛନ୍ତି, ଏବଂ ପ୍ରଭୁ ତାଙ୍କୁ ଏ ସବୁ ଜଣାଇବାକୁ କହିଛନ୍ତି ।

### ଶିଷ୍ୟମାନଙ୍କ ପ୍ରତି ଯୀଶୁଙ୍କର ଦର୍ଶନ :

(ମାଥିଉ ୨୮ : ୧୬-୨୦ । ମାର୍କ ୧୬ : ୧୪-୧୮ । ଲୂକ ୨୪ : ୩୬-୪୯ ପାଠକର ।)

୧୯ ସେହି ରବିବାର ଦିନ ସନ୍ଧ୍ୟା ସମୟରେ ଶିଷ୍ୟମାନେ ଯିହୁଦୀ-
ମାନଙ୍କ ଭୟରେ ଦ୍ୱାରରୁଦ୍ଧ କରି ଭିତରେ ଥାନ୍ତି । ଯୀଶୁ ଆସି
ସେମାନଙ୍କର ମଧ୍ୟ ସ୍ଥଳରେ ଠିଆ ହୋଇଗଲେ । ସେ କହିଲେ, "ତୁମ-

୨୦ ମାନଙ୍କ ପ୍ରତି ଶାନ୍ତି ବର୍ତ୍ତୁ ।" ତା' ପରେ ସେମାନଙ୍କୁ ନିଜର ଦୁଇ ହସ୍ତ
ଓ କକ୍ଷ ଦେଖାଇଲେ । ପ୍ରଭୁଙ୍କୁ ଦେଖି ଶିଷ୍ୟମାନେ ଉଲ୍ଲସିତ ହେଲେ ।
୨୧ ଯୀଶୁ ପୁନର୍ବାର ସେମାନଙ୍କୁ କହିଲେ, "ତୁମମାନଙ୍କ ପ୍ରତି ଶାନ୍ତି ବର୍ତ୍ତୁ ।
ପିତା ମୋତେ ପ୍ରେରଣ କରିବା ପରି ମୁଁ ତୁମମାନଙ୍କୁ ପ୍ରେରଣ କରୁଛି ।"
୨୨ ଏହାପରେ ସେ ସେମାନଙ୍କ ଉପରେ ପ୍ରଶ୍ୱାସ ଛାଡ଼ି କହିଲେ,
୨୩ "ପବିତ୍ର ଆତ୍ମାଙ୍କୁ ଗ୍ରହଣ କର । ଯଦି ତୁମେ ମନୁଷ୍ୟମାନଙ୍କ ପାପ କ୍ଷମା
କର, ତେବେ ସେମାନଙ୍କର ତାହା କ୍ଷମା ହୋଇଛି, ଯଦି ତୁମେ
ସେମାନଙ୍କୁ କ୍ଷମା କର ନାହିଁ, ତେବେ ସେମାନଙ୍କର ତାହା କ୍ଷମା
ହୋଇନାହିଁ ।"

**ଯୀଶୁ ଓ ଥୋମା :**

୨୪ ଦ୍ୱାଦଶ ଶିଷ୍ୟଙ୍କ ମଧ୍ୟରୁ ଥୋମା ନାମକ ସେହି ଶିଷ୍ୟଙ୍କୁ
'ଯାଅଁଳା' ବୋଲି ଡାକନ୍ତି, ସେ ଯୀଶୁ ଆସିଲାବେଳେ ଅନୁପସ୍ଥିତ
୨୫ ଥିଲେ । ଏଣୁ ଅନ୍ୟ ଶିଷ୍ୟମାନେ ତାଙ୍କୁ କହିଲେ, "ଆମେ ପ୍ରଭୁଙ୍କର
ଦର୍ଶନ ପାଇଛୁ ।" ଥୋମା ସେମାନଙ୍କୁ କହିଲେ, "ଯଦି ମୁଁ ତାଙ୍କର
ହସ୍ତରେ କଣ୍ଟାର ଘା' ଦାଗ ନ ଦେଖେ, ସେହି କଣ୍ଟାଘା'ର ଦାଗ
ଉପରେ ଓ ତାଙ୍କର କକ୍ଷରେ ମୋର ଅଙ୍ଗୁଳି ନ ଦିଏ, ତେବେ ମୁଁ
ବିଶ୍ୱାସ କରିବି ନାହିଁ ।"

୨୬ ଏକ ସପ୍ତାହ ପରେ ଶିଷ୍ୟମାନେ ଆଉ ଥରେ ଗୃହରେ ଥିଲେ,
ଥୋମା ମଧ୍ୟ ସେମାନଙ୍କର ସହିତ ଥିଲେ । ଦ୍ୱାର ରୁଦ୍ଧ ଥିଲେ ସୁଦ୍ଧା
ଯୀଶୁ ଆସି ସେମାନଙ୍କର ମଧ୍ୟ ସ୍ଥଳରେ ଠିଆ ହୋଇଗଲେ; ସେ କହିଲେ,
୨୭ "ତୁମମାନଙ୍କ ପ୍ରତି ଶାନ୍ତି ବର୍ତ୍ତୁ ।" ସେ ଥୋମାଙ୍କ ଆଡକୁ ଲକ୍ଷ୍ୟ କରି
କହିଲେ, "ଥୋମା ଏଠାରେ ତୁମର ଅଙ୍ଗୁଳି ଦିଅ । ମୋର ହସ୍ତ
ଦୁଇଟିକୁ ଦେଖ, ତୁମର ହସ୍ତ ବଢ଼ାଇ ମୋର କକ୍ଷଦେଶରେ ଦିଅ ।
୨୮ ଆଉ ଅବିଶ୍ୱାସୀ ହୁଅ ନାହିଁ, ବିଶ୍ୱାସ କର ।" ଉତ୍ତରରେ ଥୋମା

୨୯ କହିଲେ, "ହେ ମୋର ପ୍ରଭୁ ! ହେ ମୋର ଈଶ୍ୱର ।" ଯୀଶୁ ତାଙ୍କୁ
କହିଲେ, "ମୋତେ ଦେଖିଲ ବୋଲି କି ବିଶ୍ୱାସ କରୁଛ ? ଯେଉଁମାନେ
ମୋତେ ନ ଦେଖି ବିଶ୍ୱାସ କରନ୍ତି ସେମାନେ କେଡ଼େ ଭାଗ୍ୟବାନ !"

## ଏହି ଗ୍ରନ୍ଥର ଉଦ୍ଦେଶ୍ୟ :

୩୦ ଯୀଶୁ ଏହିପରି ଆଉ ଅନେକ ଅଦ୍ଭୁତ କାର୍ଯ୍ୟ ଶିଷ୍ୟମାନଙ୍କର
ସମକ୍ଷରେ ସାଧନ କରିଥିଲେ । ସେସବୁ ଏହି ଗ୍ରନ୍ଥରେ ଲିପିବଦ୍ଧ
୩୧ ହୋଇନାହିଁ । କିନ୍ତୁ ଏସବୁ ଲିପିବଦ୍ଧ ହୋଇଛି, ଯେପରିକି ତୁମର
ବିଶ୍ୱାସ ହେବ ଯେ, ଯୀଶୁହିଁ ମଶୀହ, ଈଶ୍ୱରପୁତ୍ର ଏବଂ ଏପରି ବିଶ୍ୱାସ
କରି ତୁମେମାନେ ତାଙ୍କର ନାମରେ ଜୀବନ ପ୍ରାପ୍ତ ହୋଇପାରିବ ।

## ସପ୍ତଶିଷ୍ୟଙ୍କ ପ୍ରତି ଯୀଶୁଙ୍କର ଦର୍ଶନ :

୨୧ କିଛି ସମୟ ପରେ ଯୀଶୁ ଆଉ ଥରେ ତିବିରିୟା ହ୍ରଦକୂଳରେ
୨ ଶିଷ୍ୟମାନଙ୍କୁ ଦର୍ଶନ ଦେଲେ ; ତାହା ଏହିପରି ଘଟିଲା । ଶିମୋନ
ପିତର, ଥୋମା (ଯାହାଙ୍କୁ ଯାଆଁଳା ଡାକନ୍ତି), ଗାଲିଲୀର କାନ୍ନାନିବାସୀ
ନଥାନିୟେଲ, ଜେବଦୀଙ୍କ ପୁତ୍ରମାନେ ଓ ଯୀଶୁଙ୍କର ଆଉ ଦୁଇଜଣ
୩ ଶିଷ୍ୟ ଏକତ୍ର ହୋଇଥାନ୍ତି । ସେତିକିବେଳେ ଶିମୋନ ପିତର ଅନ୍ୟମାନଙ୍କୁ
"କହିଲେ, ମୁଁ ଯାଉଛି ମାଛ ଧରିବାକୁ ।" ସେମାନେ କହିଲେ,
"ତା' ହେଲେ ଆମେ ମଧ୍ୟ ତୁମ ସଙ୍ଗରେ ଯିବା ।" ସେମାନେ ଯାଇ
ଗୋଟିଏ ଡଙ୍ଗାରେ ଚଢ଼ିଲେ । କିନ୍ତୁ ସେହି ରାତ୍ରି ସାରା ସେମାନେ କିଛି
୪ ପାଇଲେ ନାହିଁ । ଯେତେବେଳେ ପ୍ରଭାତ ହେଲା, ଯୀଶୁ କୂଳରେ
ଉପସ୍ଥିତ ହେଲେ । କିନ୍ତୁ ଶିଷ୍ୟମାନେ ଜାଣିପାରିଲେ ନାହିଁ ଯେ, ସେ
୫ ଯୀଶୁ । ଯୀଶୁ ସେମାନଙ୍କୁ ପଚାରିଲେ, "ପିଲାମାନେ କିଛି ପାଇଲ ?"
୬ ସେମାନେ ଉତ୍ତର ଦେଲେ, "କିଛି ନାହିଁ ।" ଯୀଶୁ ସେମାନଙ୍କୁ କହିଲେ,
"ଡଙ୍ଗାର ଦକ୍ଷିଣ ପାର୍ଶ୍ୱରେ ଜାଲ ପକାଅ, କିଛି ପାଇବ ।" ସେମାନେ

ସେପରି କଲେ; ଏତେ ମାଛ ଜାଲରେ ପଡ଼ିଲା ଯେ, ସେମାନେ ଜାଲକୁ
୭ ଟାଣି ପାରିଲେ ନାହିଁ । ସେହି ଶିଷ୍ୟଙ୍କୁ ଯୀଶୁ ସ୍ନେହ କରୁଥିଲେ, ସେ
ପିତରଙ୍କୁ କହିଲେ, "ସେ ହେଉଛନ୍ତି ଯୀଶୁ ।" ପିତର ଏହା ଶୁଣିବା-
କ୍ଷଣି ଫଙ୍ଗା ଦେହ ହୋଇଥିବାରୁ ପୋଷାକଟିକୁ ପିନ୍ଧିପକାଇ ଜଳକୁ
୮ ଡେଇଁ ପଡ଼ିଲେ । ଅନ୍ୟ ଶିଷ୍ୟମାନେ ମାଛରେ ଭର୍ତ୍ତି ଜାଲକୁ ଟାଣି ଟାଣି
୯ ଗୋଟିଏ ଡଙ୍ଗାରେ କୂଳକୁ ଆସିଲେ । ସେମାନେ କୂଳଠାରୁ ବହୁତ
ଦୂରରେ ନ ଥିଲେ । ପ୍ରାୟ ୧୦୦ ଗଜ ଦୂରରେ ଥିଲେ । ସେମାନେ
କୂଳରେ ପହଞ୍ଚି ଦେଖନ୍ତି ଯେ, କୋଇଲା ନିଆଁ ଉପରେ ମାଛ
୧୦ ରଖାଯାଇଛି, ଆଉ କିଛି ରୋଟି ଅଛି । ଯୀଶୁ ସେମାନଙ୍କୁ କହିଲେ,
୧୧ 'ତୁମେ ବର୍ତ୍ତମାନ ଧରିଥିବା ମାଛରୁ କିଛି ଆଣ ।' ଶିମୋନ ପିତର କୂଳକୁ
ଆସି ଜାଲକୁ କୂଳକୁ ଟାଣିଲେ । ତାହା ଏକଶ ତେପନ ଗୋଟି ବଡ଼
ବଡ଼ ମାଛରେ ଭରି ହୋଇଯାଇଥିଲା । ଜାଲରେ ଏତେ ମାଛ ଥିଲେ
୧୨ ସୁଦ୍ଧା, ତାହା ଛିଣ୍ଡିଲା ନାହିଁ । ଯୀଶୁ ସେମାନଙ୍କୁ କହିଲେ, "ଆସ,
ଭୋଜନ କର ।" ଶିଷ୍ୟମାନଙ୍କ ମଧ୍ୟରୁ କେହି 'ତୁମେ କିଏ' ବୋଲି
ତାଙ୍କୁ ପ୍ରଶ୍ନ ପଚାରିବାକୁ ସାହସ କଲେ ନାହିଁ । କାରଣ ସେମାନେ ଜାଣି
୧୩ ଥିଲେ ଯେ, ସେ ପ୍ରଭୁ । ଯୀଶୁ ଯାଇ ରୋଟି ନେଇ ସେମାନଙ୍କୁ ଦେଲେ ।
ସେହିପରି ସେ ମାଛ ମଧ୍ୟ ଦେଲେ ।

୧୪ ମୃତ୍ୟୁରୁ ଜୀବନପ୍ରାପ୍ତ ହୋଇ ଉଠିବାର ପରେ ଶିଷ୍ୟମାନଙ୍କ ପ୍ରତି
ଏହା ଯୀଶୁଙ୍କର ତୃତୀୟ ଦର୍ଶନ ।

### ଯୀଶୁ ଓ ପିତର :

୧୫ ଭୋଜନ ପରେ ଯୀଶୁ ଶିମୋନ ପିତରଙ୍କୁ କହିଲେ, "ଯୋହନଙ୍କ
ପୁତ୍ର ଶିମୋନ, ତୁମେ କି ମୋତେ ଏ ସବୁଠାରୁ ଅଧିକ ପ୍ରେମ କର ?"
ସେ ଉତ୍ତର ଦେଲେ, "ହଁ ପ୍ରଭୁ, ଆପଣ ଜାଣନ୍ତି ଯେ, ମୁଁ ଆପଣଙ୍କୁ
ପ୍ରେମ କରେ ।" ଯୀଶୁ ତାଙ୍କୁ କହିଲେ, "ମୋର ମେଷଶାବକଗୁଡ଼ିକୁ

୧୬ ଯତ୍ନ ନିଅ ।" ଦ୍ୱିତୀୟ ଥର ଯୀଶୁ ତାଙ୍କୁ କହିଲେ, "ହେ ଯୋହନଙ୍କ ପୁତ୍ର
ଶିମୋନ, ତୁମେ କି ମୋତେ ପ୍ରେମ କର ?" ସେ ଉତ୍ତର ଦେଲେ,
"ହଁ ପ୍ରଭୁ, ଆପଣ ଜାଣନ୍ତି ଯେ, ମୁଁ ଆପଣଙ୍କୁ ପ୍ରେମ କରେ।" ଯୀଶୁ
୧୭ ତାଙ୍କୁ କହିଲେ, "ମୋର ମେଷମାନଙ୍କୁ ପ୍ରତିପାଳନ କର ।" ଯୀଶୁ ତାଙ୍କୁ
ତୃତୀୟଥର ପଚାରିଲେ, 'ହେ ଯୋହନଙ୍କ ପୁତ୍ର ଶିମୋନ, ତୁମେ କଅଣ
ମୋତେ ପ୍ରେମ କର ?" ଯୀଶୁ ତାଙ୍କୁ ତୃତୀୟଥର ତୁମେ ମୋତେ ପ୍ରେମ
କର କି ବୋଲି ପଚାରିବାରୁ ପିତରଙ୍କର ମନରେ ଦୁଃଖ ହେଲା । ସେ
କହିଲେ, "ପ୍ରଭୁ ଆପଣ ତ ସବୁ ଜାଣନ୍ତି, ଆପଣ ଜାଣନ୍ତି ଯେ, ମୁଁ
ଆପଣଙ୍କୁ ପ୍ରେମ କରେ ।" ଯୀଶୁ ତାଙ୍କୁ କହିଲେ, "ତୁମେ ମୋର
୧୮ ମେଷଗୁଡ଼ିକର ଯତ୍ନ ନିଅ । ମୁଁ ସତ୍ୟ କହୁଛି, ଯେତେବେଳେ ତୁମେ
ଯୁବା ଥିଲ, ନିଜେ ନିଜର କଟି ବନ୍ଧନ କରୁଥିଲ, ନିଜେ ଯେଉଁ
ଆଡ଼େ ଇଚ୍ଛା ସେ ଆଡ଼େ ଯାଉଥିଲ, କିନ୍ତୁ ଯେତେବେଳେ ବୃଦ୍ଧ ହେବ,
ସେତେବେଳେ ତୁମର ଦୁଇ ହସ୍ତ ବିସ୍ତାର କରିଦେବ, ଓ ଆଉ ଜଣେ
ତୁମର କଟି ବାନ୍ଧିଦେବ । ସେ ତୁମକୁ ତୁମେ ଯେଉଁ ଆଡ଼େ ଯିବାକୁ
୧୯ ଇଚ୍ଛା ନାହିଁ ସେଠାକୁ ନେଇଯିବ ।" ଏପରି କହି ଯୀଶୁ ପିତରଙ୍କୁ ସେ
କି ଭଳି ମୃତ୍ୟୁଭୋଗ କରି ଈଶ୍ୱରଙ୍କର ଗୌରବ ପ୍ରକାଶ କରିବେ, ତାର
ସଙ୍କେତ ଦେଇଥିଲେ । ତା'ପରେ ଯୀଶୁ ତାଙ୍କୁ କହିଲେ, "ମୋର
ଅନୁଗମନ କର ।"

**ଯୀଶୁ ଓ ଅନ୍ୟ ଶିଷ୍ୟ :**

୨୦ ପିତର ବୁଲିପଡ଼ି ତାଙ୍କର ପଛରେ ଯେଉଁ ଅନ୍ୟ ଶିଷ୍ୟଙ୍କୁ ଯୀଶୁ
ପ୍ରେମ କରନ୍ତି, ତାଙ୍କୁ ଦେଖିଲେ । ଏ ସେହି ଶିଷ୍ୟ ଯେ ଯୀଶୁ ଭୋଜନ
କରୁଥିବାବେଳେ ଯୀଶୁଙ୍କ ନିକଟରେ ତାଙ୍କ ଆଡ଼କୁ ଢଳିପଡ଼ି
ପଚାରିଥିଲେ, "ପ୍ରଭୁ କିଏ ତୁମକୁ ଶତ୍ରୁ ହସ୍ତରେ ଧରାଇ ଦେବ ?"
୨୧ ପିତର ତାଙ୍କୁ ଦେଖି ଯୀଶୁଙ୍କୁ ପଚାରିଲେ, "ପ୍ରଭୁ, ଏହି ବ୍ୟକ୍ତିଙ୍କର କଅଣ
୨୨ ଘଟିବ ?" ଯୀଶୁ ଉତ୍ତର ଦେଲେ, "ମୁଁ ଯଦି ଇଚ୍ଛେ ଯେ, ସେ ମୋର

ଆଗମନ ପର୍ଯ୍ୟନ୍ତ ବଞ୍ଚି ରହୁ, ତୁମର ସେଥିରେ କଅଣ ଅଛି ? ତୁମେ ମୋହର
୨୩ ଅନୁଗମନ କର ।" ଏଣୁ ଯୀଶୁଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଗୋଟିଏ
କଥା ବ୍ୟାପ୍ତ ହୋଇଗଲା ଯେ, ଏହି ଶିଷ୍ୟର ମୃତ୍ୟୁ ହେବ ନାହିଁ । କିନ୍ତୁ
ଯୀଶୁ କହି ନ ଥିଲେ ଯେ, ତାର ମୃତ୍ୟୁ ହେବ ନାହିଁ । ସେ କହିଥିଲେ,
"ଯଦି ମୁଁ ଚାହେଁ, ସେ ମୋର ଆଗମନ ପର୍ଯ୍ୟନ୍ତ ବଞ୍ଚିରହୁ, ତୁମର
ସେଥିରେ କଅଣ ଅଛି ?"

୨୪ ଉପରୋକ୍ତ ସମସ୍ତ ବିଷୟ ସେହି ଶିଷ୍ୟଙ୍କର ସାକ୍ଷ୍ୟ ଓ ଲେଖା ;
ଆମେ ଜାଣୁ ଯେ, ତାଙ୍କର ସେହି ସାକ୍ଷ୍ୟ ସତ୍ୟ ।

**ଉପସଂହାର :**

୨୫ ଏହା ଛଡ଼ା ଆହୁରି ଅନେକ କିଛି ଯୀଶୁ ସାଧନ କରିଥିଲେ ।
ଯଦି ସବୁକୁ ଗୋଟି ଗୋଟିକରି ଲିପିବଦ୍ଧ କରାଯାଏ, ତେବେ ମୋର
ମନେ ହୁଏ, ଯେଉଁ ଗ୍ରନ୍ଥାବଳୀ ରଚିତ ହେବ, ତାହାପାଇଁ ସମୁଦାୟ
ଜଗତରେ ସୁଦ୍ଧା ସ୍ଥାନର ଅଭାବ ହୋଇଯିବ ।

